# ଭୂମିକା

ଏହି ପୁସ୍ତକରେ ଥିବା ଅଧିକାଂଶ କବିତା ପ୍ରାଥମିକ ଶ୍ରେଣୀର ପାଠ୍ୟପୁସ୍ତକମାନଙ୍କରେ ୧୯୩୫ ଠାରୁ ୧୯୭୦ ମସିହା ମଧ୍ୟରେ ପ୍ରକାଶିତ ହୋଇଥିଲା ଏବଂ ଅବଶିଷ୍ଟ କବିତା 'ଶିଶୁଲେଖା', 'ମନପବନ', 'ମୋ ଦେଶ', 'ସଂସାର', 'ଗୌରବ' ପ୍ରଭୃତି ବିଭିନ୍ନ ଶିଶୁ ପତ୍ରିକାରେ ସ୍ଥାନ ପାଇଥିଲା । ପାଠ୍ୟପୁସ୍ତକଗୁଡ଼ିକର ଜାତୀୟକରଣ ପରେ ସେଥିରେ ପ୍ରକାଶିତ କବିତାଗୁଡ଼ିକ ଆଉ କେଉଁଠାରେ ପଢ଼ିବାକୁ ମିଳିଲା ନାହିଁ । ତେଣୁ ସେଗୁଡ଼ିକୁ ଏକତ୍ର କରି ପ୍ରକାଶ କରିବାପାଇଁ କେତେକ ସହୃଦୟ ପାଠକ ମୋତେ ଅନୁରୋଧ କରିଥିଲେ । ୧୯୭୫ରେ 'ଝୁମୁକା' ନାମ ଦେଇ ମୁଁ ଏହି କବିତା ସଂକଳନଟି ପ୍ରଥମେ ପ୍ରକାଶ କରିଥିଲି । ସୁଖର କଥା, ଓଡ଼ିଶା ସାହିତ୍ୟ ଏକାଡେମୀ ଏହାକୁ ୧୯୭୪, ୧୯୭୫ ଓ ୧୯୭୬ ବର୍ଷ ମଧ୍ୟରେ ପ୍ରକାଶିତ ଶିଶୁପୁସ୍ତକ ମଧ୍ୟରେ ଶ୍ରେଷ୍ଠ ସ୍ଥାନ ଦେଇ ଏ ବର୍ଷ ପୁରସ୍କୃତ କରିଅଛନ୍ତି । ଏହାଫଳରେ 'ଝୁମୁକା'ର ଏହି ପରିବର୍ଦ୍ଧିତ ନୂତନ ସଂସ୍କରଣର ପ୍ରକାଶ ସମ୍ଭବ ହୋଇପାରିଛି ।

କବିତାଗୁଡ଼ିକୁ ସାବଲୀଳ କରିବାପାଇଁ ସ୍ଥାନେ ସ୍ଥାନେ ମୂଳ ରଚନାରେ ସାମାନ୍ୟ ପରିବର୍ତ୍ତନ କରାଯାଇଛି । ପ୍ରକାଶିତ କବିତାଗୁଡ଼ିକର ମୋଟ ସଂଖ୍ୟା ୧୦୭ ; ଭାବ ଓ ବିଷୟବସ୍ତୁ ବିଚାର କରି ସେଗୁଡ଼ିକୁ ସୂଚୀରେ ଦିଆଯାଇଥିବା ୮ଟି ବିଭାଗରେ ଖୋଜି ନେବାକୁ ଅନୁରୋଧ ।

ତା ୨୫ । ୨ । ୧୯୮୦ — ଲେଖକ

# ସୂଚୀ

# ଝୁମୁକା

## ଚକା ଚକା ଭଉଁରୀ

ଚକା ଚକା ଭଉଁରୀ
ମାମୁଘର ଚଉଁରୀ,

ମାମୁ ମତେ ମାଇଲେ
କେତେ କଥା କହିଲେ,
ବୁଝେଇ ସୁଝେଇ ପୁଣି
ଦୁଧ ଭାତ ଖୋଇଲେ ।

ମାମୁଘର ଅଗଣାରେ
ନାଲି ନେଳ ପଥର,
ଫୁଲ ଫୁଟି ବାସୁଥାଏ
ସତେ ଅବା ଅତର ।

ମାମୁଘରେ ବାଜୁଥାଏ
ଯୋଡ଼ା ଯୋଡ଼ା ମହୁରୀ,
ଚକା ଚକା ଭଉଁରୀ ଗୋ
ମାମୁଘର ଚଉଁରୀ ।









# ହାତୀ ନେ, ଘୋଡ଼ା ନେ

ହାତୀ ନେ, ଘୋଡ଼ା ନେ
ମୋ ପେଏଁ କାଳ ବଜେଇ ଦେ,
ମୋତି ନେ, ହୀରା ନେ,
ମୋ ଘରଟିକି ସଜେଇ ଦେ ।
ସୁବର୍ଣ୍ଣର ଥାଳୀ ନେ,
ମାଣିକ୍ୟର ମାଳ ନେ,
ମୋ ଗୁଡ଼ିଟିକୁ ଉଡ଼େଇ ଦେ,
ମୋ ଛବି ବହି ପଢ଼େଇ ଦେ ।
ଜାମା ନେ, ଜୋତା ନେ,
ଜରି ପାଟ ଛତା ନେ,
ମୋ ବରକୋଳି ଝଡ଼େଇ ଦେ,
ମୋ ଖେଳଘର ଗଢ଼େଇ ଦେ ।
ଶାଗ ନେ, ଶୁଆ ନେ
ଧଳା ଭାଲୁଛୁଆ ନେ
ମୋ ଚକଟିକୁ ବୁଲେଇ ଦେ,
ମୋ ବେଲୁନକୁ ଫୁଲେଇ ଦେ ।
କ୍ଷିରି ପୁରି ଖଜା ନେ
ବଡ଼ ମାଛ ଭଜା ନେ,
ମୋ ଦୋଳଟିକୁ ହଲେଇ ଦେ
ମୋ ସାଇକେଲ ଚଲେଇ ଦେ ।
ହୀରା ମାଳା ମୋତି ନେ
ମୋ କଣ୍ଢେଇକି ସଜେଇ ଦେ,
ଘୋଡ଼ା ନେ, ହାତୀ ନେ,
ମୋ ପେଏଁ କାଳ ବଜେଇ ଦେ ।



## ଦନେଇ

କେଉଠ ପିଲ୍ ସେ ଦନେଇ
କଥା କହୁଥାଏ ଖନେଇ,
ମୁହଁଟି ତାହାର ସରୁଆ
ଦନେଇଟି ବଡ଼ ଡରୁଆ ।

ଦନେଇ ତା ବାପ ସାଥିରେ
ମାଛ ମାରିଯାଏ ଗାଡ଼ିରେ ,
ପୁଅକୁ କୂଳରେ ବସାଇ
ବାପ ଦିଏ ଜାଲ ଭସାଇ ।

ନଈରେ ପହଁରି ହରଷେ
ବଡ ବଡ଼ ମାଛ ଧରେ ସେ ;
ପୁଅ ଡରକୁଳା ଦନେଇ
କୂଳେ ବସିଥାଏ ଅନେଇ ।

## ସୁଆଦିଆ

ହାଡ଼ଚଳ ଘାସ ନ ଥିବ ଛୁଇ
ବଡ଼ ସୁଆଦିଆ ବୋଲଇ ଗାଈ ।

ମୁଣ୍ଡା ମୁଣ୍ଡା ମାଛ ଶୁଖୁଆ ଭଜା
ବିରାଡ଼ି ବୋଲେ ଏ ସବୁଠୁଁ ମଜା ।

କୁକୁର କହଇ ସେ ସବୁ ଛାଡ଼
ମତେ ଦିଅ ଖଣ୍ଡେ ମାଉଁସ ହାଡ଼ ।

ମୂଷା ଖାଇ ପେଣ୍ଟ ହାକୁଟି ମାରେ
ଆହୁରି ଖାଇବ ବସ୍ତୁର କରେ ।

ବୁଢ଼ା ମାଙ୍କଡ଼ଟା ଗୁଳରେ ବସି
ମଉଜେ ଗ୍ଲେବାଏ କାକୁଡ଼ି କଷି ।

ପିଲାଟି କହଇ ମିଠେଇ ଧର
ସୁଆଦିଆ ଆଉ ନାହିଁ ଏପର ।

## ଟୁଉଲୁ ମୂଷି

ଟୁଉଲୁ ମୂଷି, ଟୁକେଇ ମୂଷି
ଧାନ ଭରଣକ ଖାଉଥା ବସି
ଭୁ ଥା ମୁଁ ଯାଉଛୁ ରୁଷି ।

ଟୁଉଲୁ ମୂଷି, ଟୁକେଇ ମୂଷି,
କାହିଁ ଗଲେ ତୋର ଛୁଆ ?
ଗୋଟିଏ ଖାଇଲା ଛଇଳ ପୁଷି,
ଆରଟି ଖାଇଲା ଭୁଆ ।

ଟୁଉଲୁ ମୂଷି, ଟୁକେଇ ମୂଷି,
ଅଟୁ ଭୁ ବଡ଼ ପେଟୁ,
ଗୁଳରୁ ଆସି ଗାତରେ ପଶି
ଓଳଆ ପେଡ଼ି କାଟୁ ।

ଟୁଉଲୁ ମୂଷି, ଟୁକେଇ ମୂଷି
ଧାନ ଖାଇ ଖାଇ ହେଉଛୁ ଖୁସି,
କଥା ପଦେ ମତେ ନ କହୁ ହସି
ଭୁ ଥାଆ ମୁଁ ଯାଉଛୁ ରୁଷି ।

## ମୋର ମନ ହୁଏ

ମୋର ମନ ହୁଏ ହେବ ଗୁଡ଼ି,
ଯିବ ନୀଳ ଆକାଶକୁ ଉଡ଼ି;
ସେଠି ମେଘ କୋଳେ ଯିବ ଲୁଚି,
ମନ ମଉଜେ ଖେଳିବ ପୁଚି ।

ମୋର ମନ ହୁଏ ହେବ ଘୋଡ଼ା,
ପେଟେ ଦାନା ମୋର ଖାଲି ଲୋଡ଼ା;
ସିଧା ନାଲି ସଡ଼କକୁ ଉଠି
ଯିବ ପବନ ପରି ମୁଁ ଛୁଟି ।

ମୋର ମନ ହୁଏ ହେବ ମାଛ,
ପାଣି ଭିତରେ କରିବ ନାଚ;
ହେବ ରୂପା ପରି ମୋର ଦେହ,
ମତେ କିଏ ସେ ଧରିବ କହ ।

ମୋର ମନ ହୁଏ ହେବ ଫୁଲ,
ମତେ ଭଅଁର କରିବ ଗେଲ;
ଗଛ ଡାଳେ ଝୁଲୁଥିବ ବସି,
ଦେଖି କିଏ ବା ନ ହେବ ଖୁସି ?

## ଭଳି ଭଳି ଜୀବ

ବିଲେଇ ନାମୀ କରିଣ ଓଷା,
ଛପି ଛପିକା ଧରିବ ମୂଷା ।

ଘରରେ ଯଦି ଆସିବ ଚୋର,
ଭୁକି ଉଠିବ କୁକୁର ମୋର ।

ଘୂମୁ ରୁ ଘୂମୁ ଘୂମୁରେ ଗାଏ,
ଉଡ଼ିଗଲେ ସେ ନ ହୁଏ ଧରା ।

ଗଛରେ ଲୁଚି କୋଇଲି ଥାଏ,
କୁଉ-କୁଉ ତା ଗୀତଟି ଗାଏ ।

ସାପ ପାଟିରେ ରହିଛି ବିଷ,
ଧରିବ ତାକୁ କାହା ସାହସ ?

## ଚିଡ଼ିଆଖାନା

ବାଲୁଆ ଜନା ମାଟିଆ ରୂପ
ମଶାଣି ତାର ଘର,
ରାତି ଅଧରେ ହୁକେ ହୁକେ
ଭୁକିଲେ ମାଡ଼େ ଡର ।

ବୁଢ଼ା ମାଙ୍କଡ଼ ମୁହଁଟା କଳା
ବାଡ଼ି ବଗିଚ୍ଚ ପଶେ,
ଟେକା ମାଇଲେ ଦାନ୍ତ ଦେଖାଇ
ଗଛ ଡାଳରୁ ଖସେ ।

ପିଠିରେ କୁଜ ମୁହଁଟା ବଙ୍କା
ଓଟ ତାହାର ନାମ,
ବାଲିରେ ଚାଲି ବୋଝ ବୋହିବା
ଅଟଇ ତାର କାମ ।

ବାଘ ରଜାକୁ ନ ଡରେ କିଏ
ବଣଟା ତାର ଦେଶ,
ଏକା ଝାପଟେ ସବୁ ଜୀବର
ଜୀବନ କରେ ଶେଷ ।

## ସାଧବବୋହୂ

ନାଲି ଗୁଲୁ ଗୁଲୁ    ସାଧବବୋହୂ ଲୋ
ସାଧବବୋହୂ,
ଘାସ ପଡ଼ିଆରେ    କୁଆଡ଼େ ଯାଉ ଲୋ,
କେଉଁଠି ରହୁ ?
ତତେ ଗୁଡ଼ କେଉଁ    ମୂଲକେ ଯାଇଛୁ
ସାଧବବର ?
ବେଗି ବେଗି ଯାଆ    ବେଳ ବୁଡ଼ିଗଲେ
ମାଡ଼ିବ ଡର ।
ମେଘ ବରଷୁଛି    ଝିପିର ଝିପି ଲୋ
ଖସଡ଼ା ବାଟ,
ଗୋଡ଼ ଖସିଗଲେ    କାଦୁଅ ହେବ ଲୋ
ତୋ ନୂଆ ପାଟ ।
ମୁହଁ ପୋତ ପୋତ    କାହାକୁ ଭୁଲୁ ଲୋ
କି କଥା କହୁ ?
ନାଲି ଗୁଲୁ ଗୁଲୁ    ସାଧବବୋହୂ ଲୋ
ସାଧବବୋହୂ ।

## ଟିକି କୁନା

ଟିକି ଟିକି ଓଠ ତାର    ଡଳ ଡଳ ଗୁହାଣୀ,
ଟିକି ଜୀବନରେ ତାର    କି ଅଛି ବା କାହାଣୀ !
କହୁଣୀରେ ପଡ଼ି କୁନା    ହାତ ଗୋଡ଼ ହଲାଇ
ଦୁଧ କଲେ ପିଇବାକୁ    ପାଟି ଦିଏ ମେଲାଇ ।

ବଡ଼ ହେଲେ ଏଇ କୁନା      କେତେ ପାଠ ପଢ଼ିବ,
ଭଲ ଭଲ କଥା ଶିଖି      ଜୀବନକୁ ଗଢ଼ିବ ;
ଆଉ କେତେ ବରଷେ
ହେବ ଜଣେ ବୀର ସେ,
ଉଡ଼ାଜାହାଜ ଚଳାଇ      ଆକାଶରେ ଉଡ଼ିବ,
ସିଂହ ଶକତି ଧରି      ଦେଶପାଇଁ ଲଢ଼ିବ ।

ଲହୁଣୀ ପିଣ୍ଡୁଳା ପରି      କଅଁଳ ଏ ମଥାଟି,
ଆଜ କିଛୁ ବୁଝୁନାହିଁ,      କହୁନାହିଁ କଥାଟି,
ଦିନେ କଥା କହିବ
ଜଗତକୁ ମୋହିବ,
ଏଇ ମଥା କରିଦେବ      ଶତ୍ରୁକୁ ଚୂନା ରେ,
ଏଇ ହାତ ଭରିଦେବ      ଦେଶଯାକ ସୁନାରେ ।

ପର ଉପକାର କରି      ଭଲ କାମେ ମାତି ରେ,
ଏଇ କୁନା ଦିନେପୁଣି      ଟେକିବ ଏ ଜାତିରେ;
ପାଣି କରି ରକତ
ଦେହ କରି ଶକତ
ଗଢ଼ିବ ସଡ଼କ ପୋଲ      କଳମାନ ଚଳାଇ
ଆଜ ପଡ଼ିଥାଉ କୁନା      ହାତ ଗୋଡ଼ ହଲାଇ ।

## ମଧୁବାବୁ ସାଙ୍ଗେ ଲଢ଼ିବି

"ବୋଉ ଲୋ ବୋଉ,      ତୁ ସବୁ କହୁ
'ବେଶୀ ବେଶୀ ପାଠ ପଢ଼ିବୁ
କାଳିଆ ଘୋଡ଼ାରେ ଚଢ଼ିବୁ,
ମଧୁବାବୁ ସାଙ୍ଗେ ଲଢ଼ିବୁ' ?

ପାଠ ପଢ଼ିଲେ ବଢ଼େ କ ବଳ
ଲଢ଼େଇ କଲେ ମିଳେ କ ଫଳ
କ ଲାଭ ପାଠ ପଢ଼ି ?
କାହିଁକ ମତେ ଭୁଲାଇ କହ
କାଳିଆ ଘୋଡ଼ା ପାଇବ କାହୁଁ ?
ଜାଣେ ତ ନାହିଁ ଚଢ଼ି ?
ଲଢ଼େଇ ମତେ ଆସେ ତ ନାହିଁ,
ହଣ୍ଡିଆରଟେ ଧରିବା ପାଇଁ
ବଳ କାହିଁ ମୋ ହାତେ,
ମଧୁବାବୁ କ ବଡ଼ୁଆ ଘର ?
ପିଲାଟାଏ ମୁଁ ଯିବ ତ ହାରି
ଲାଜ ମାଡ଼ିବ ମତେ ।"
"ଧନ ତୁ ଯାହା କହିଲୁ ସତ,
କାଳିଆ ଘୋଡ଼ା ନ ଥାଉ, ତୁ ତ
କରି ପାରିବୁ ଦେଶର ହିତ
ରେଳ ମଟର ଚଢ଼ି,
ଦେଖିବୁ ଦେଶ ଦୁନିଆଁ ଗାଆଁ
ବଡ଼ ହୋଇ ତୁ କରିବୁ ନାଆଁ
ପାଠ ବହୁତ ପଢ଼ି ।
ମଧୁବାବୁ ଯେ ଗଲେଣି ମରି,
ବୁଦ୍ଧିଆ ହେବୁ ତାଙ୍କରି ପରି,
ଧମକ ଶୁଣି ନ ଯିବୁ ଡରି
ଟାଣ କରିବୁ ଗୁଡି,
ଚତୁର ପଣେ ଜଗତ ଜିଣି
ସବୁରି ମନ ପାରିବୁ କିଣି,
ହଣ୍ଡିଆରରେ ମଣିଷ ହାଣି
ବଡ଼ ହୁଏନି ଜାତି ।"

## କାନ୍ଦୁରୀ ଝିଅ

କାନ୍ଦୁଣ୍ଡ ଝିଅ ସେ      କନକଲତା
ଯେତେ ବୁଝାଇଲେ    ନ ଶୁଣେ କଥା ।
        କାହା ଘରେ ଅଛି      ଏଭଳି ଝିଅ ?
        ସବୁବେଳେ କହେ—   ମିଠେଇ ଦିଅ ।
ହାଣ୍ଡିଶାଳ ମୋଟେ     ଛାଡ଼ିବ ନାହିଁ
ଠାକ ବସିଥିବ        ଖାଇବା ପାଇଁ ।
        କାନ୍ଦୁଣ୍ଡ ଝିଅର       ଗୁଡର ଗାର
        ଡଲେ ଶୋଇଯାଏ    କଡଗ୍ ପାର ;
ହାତକୁ ମିଛରେ       ଆଖିରେ ଘଷି
କେତେବେଳେ ପୁଣି    ସକାଏ ବସି ।
        ଏଡ଼େ ଜିଦ୍ଖୋର      କନକଲତା
        ଯେତେ ବୁଝାଇଲେ    ନ ଶୁଣେ କଥା ।
    ବାପ ମାଆ ସାଥୀ      ଭଉଣୀ ଭାଇ,
    କେହି ତାକୁ ସୁଖ      ପାଆନ୍ତି ନାହିଁ ।

## ପୁଷି ଓ ମୂଷି

ଏ ପାଖେ ପୁଷି              ସେ ପାଖେ ମୂଷି
        ମଝିରେ କାଠ ବାଡ଼,
ସତେ କ ହୁହେଁ              ସମାନ ଖାର
        କେବଳ ସାନ ବଡ଼ ।

ମୂଷା ବସିଛି ଜଣ ଫୁଲାଇ
ନାହିଁ ତାହାର ଭୟ,
ପୁଷିକୁ ଚାହିଁ କହୁଛି, "ଶୁଣ
ବଗଡ଼ ମହାଶୟ,

ତୁମର ଅଛି ଜଣ ହଲେ ତ
ଆମର ଜଣ ହଲେ,
ଲାଙ୍ଗୁଡ଼ ଦେଖ ଦାନ୍ତ ପରଖ,
ବୁଝି ପାରିବ ବଳେ ।

ତୁମେ ଯେମିତି ଶିକାରୁ ଡେଇଁ
ଦୁଧ ପିଉଛ ଚାଟି,
ଆମେ ସେମିତି ଧାନ ଖାଉଛୁ
ଓଳଆ ପେଡ଼ କାଟି ।

ଲଢ଼େଇ ଯଦି କରିବ ଆସ
ନାହିଁ ଆମର ଡର,"
ଏହିପରି ସେ ସାହସୀ ମୂଷା
କହିଲା କେତେ ଥର ।

ବଗଡ଼ ଏଣେ ଛକ ଛକକା
ମାରିଲା ଏକ କୁଦା,
ଗାଉଁକନା ସେ ମୂଷାକୁ ଧରି
ଘରକୁ ଗଲା ସିଧା ।

## ମୋ ଟିକି ଉଡ଼ାଜାହାଜ

ଉଡ଼ାଜାହାଜଟା ହୋଇଥାନ୍ତା ଯେବେ ଚଉକପର,
ସକାଳୁ ଦଖଣ୍ଡ ପରଟା ଖାଇ
ଗରମ କୁରୁତା ଦେହରେ ଦେଇ
ଦୁନିଆଟା ସାରା ବୁଲି ଆସନ୍ତି ମୁଁ ମାଆକୁ ଧରି,
ଉଡ଼ାଜାହାଜଟା ହୋଇଥାନ୍ତା ଯେବେ ଚଉକପରି ।

ଇଟାଲି ଦେଶରେ ଖେଳନ୍ତି ଦୋଳି
ରୁଷିଆ ବଣରୁ ଖାଆନ୍ତି କୋଳି
ଜାପାନ କୂଳରେ ମାଛ ଧରି ପୁଣି ଆସନ୍ତି ଫେରି,
ଉଡ଼ାଜାହାଜଟା ହୋଇଥାନ୍ତା ଯେବେ ଚଉକ ପରି ।

ଦିନେ ଦିନେ ବଡ଼ ସକାଳୁ ଉଠି
ମେଘ ଉପରକୁ ଯାଆନ୍ତି ଛୁଟି,
ଦେଖି ଆସନ୍ତି ମୁଁ ଜହ୍ନମାମୁ ଘର ସରଗପୁରି
ଉଡ଼ାଜାହାଜଟା ହୋଇଥାନ୍ତା ଯେବେ ଚଉକପରି ।

## ନୂଆ ଗାଡ଼ି

ହାଇରେ ହାଇ ଦେଖିଲି ଦିନେ
ଗୋଟାଏ ନୂଆ ଗାଡ଼ି,
ତା' ଭିତରେ ମିଠେଇ କୋରି
ରହିଛି ଧାଡ଼ି ଧାଡ଼ି

ପାଚଲା କୋଳି,　　ଆମ୍ବ ପିଜୁଳି,
　　　　　　　　　　କଦଳୀ ଆଦି ଫଳ;
ତାକୁ ଦେଖି　　ମୋ ପାଟିରୁ ଝାଇ
　　　　　　　　　　ବହିଲା ଖାଲି ଲାଳ ।

ଘର ଭଳିଆ　　ଗାଡ଼ିଟି ଝଟେ
　　　　　　　　　　ଦୁଇଟା ତାର ଚକ,
ଜରି କାଗଜ　　ମଡ଼ା ହୋଇ ସେ
　　　　　　　　　　ଝଟଇ ଜକଜକ ।

ଗୋଟାଏ ଛେଳି　　ଆଗରେ ରହି
　　　　　　　　　　ଟାଣୁଥିଲା ସେ ଗାଡ଼ି,
ବିଲୁଆ ନନା　　ଅଡ଼ାଉଥିଲା
　　　　　　　　　　ଗୋଡ଼ରେ ଧରି ବାଡ଼ି ।

ଛେଳି ବିଚରା　　ପାହାର ଖାଇ
　　　　　　　　　　'ଅରର୍ ମେଁ' ଡାକେ,
ବିଲୁଆ ନନା　　ମୁହଁକୁ ଟେକି
　　　　　　　　　　ବୋବାଏ 'ହୁକେ ହୁକେ' ।

## ଟିକି ଚଢ଼େଇ

ଟିକି ଚଢ଼େଇ　　　　ସରଗେ ରହି
ଗଛ ଡାଳରେ ବସି
ସରୁ ଗଳାରେ　　　　ଗାଉଛି ଗୀତ
ମନଟା ତାର ଖୁସି ।









ନେଳ ଆକାଶ ଶାଗୁଆ ଗଛ
ପବନ ବହେ ଥିର,
ଗ୍ଛର ବଗରେ ସୁନେଲି ଖଗ
ଆଲୁଅ ପଡ଼େ ଝିର ।

ଡେଣା ଦୁଇଟି ଶକଣ ଗାର
କଅଁଳ ଛନ ଛନ,
ସରୁ ଗଳାରେ ଗାଉଛି ଗୀତ
ଖୁସି ଅଛି ତା ମନ ।

ତଳେ ବସିଛି ବାଣୁଆ ଟୋକା
ଧନୁରେ ଯୋଖି ଶର,
ଚଢ଼େଇଟିକି ମାରିବ ବୋଲି
ହେଉଛି ତରତର ।

"କେଡ଼େ କଅଁଳ ମାଉଁସ ତାର
ଖାଇବ କରି ମଜା,
କରି ଜାଣିଲେ ଗୋଡ଼ ଦିଓଟି
ବଢ଼ିଆ ହେବ ଭଜା ।"

ଟିକି ଚଢ଼େଇ କହିଲା, "ଭାଇ,
ଭଜା ହେବନି ମୁହିଁ,"
ଫୁର୍‌ର-କରେ ଉଡ଼ିଗଲା ସେ
ରହିଛି ଟୋକା ଚୁହିଁ ।



# ଅଦ୍ଭୁତ ଜୀବ

ଏଭଳ ଜୀବଟି କାହିଁ ଦେଖିଛ କ ପିଲେ—
ପାଟି ନାହିଁ କଥା କହେ, ଗୋଡ଼ ନାହିଁ ଚ଼ଲେ ?
କଥା କହେ ଥିର ଥିର
ଚ଼ଲୁଥାଏ ଦୂର ଦୂର
ଦେହ ତାର ଝାଣ ହୁଏ ମୋଡ଼ ମୋଡ଼ ଦେଲେ,
ଏଭଳ ଜୀବଟି କାହିଁ ଦେଖିଛ କ ପିଲେ ?

ପେଟ ମୋଡ଼ ଦେଲେ ତାର ଦେହ ହୁଏ ତାଜା,
ଲୁହେଁ ସେ ରେଡଓ କବା କଥାକୁହା ବାଜା ।
ଘଣ୍ଟସାର ଉଜାଗର,
ମାଡ଼େନାହିଁ ତାକୁ ଡର,
ଗୋଟିଏ ଥାନରେ ରହ ହନଘଣ୍ଟ ଚ଼ଲେ,
ଏଭଳ ଜୀବଟି କାହିଁ ଦେଖିଛ କ ପିଲେ ?

ତାକୁ ଯେ ନ ମାନେ ହୁଏ ମହା ହରବର,
ମଣିଷକୁ କରାଏ ସେ କାମେ ତରତର,
ଏଭଳ ଜୀବଟି କାହିଁ
ଦେଖିଛକ ଠିକ ଭାଇ
ଚକା ମୁହଁଟିରେ ତାର ଦୁଇଗୋଟି କଣ୍ଟା,
କହି ନ ପାରିଲେ ଯାଇ ଦେଖିଆସ ଘଣ୍ଟା ।

# ସରଗର ପରୀ

( ୧ )

ଝିପି ଝିପି ବରଷାରେ ଥିର ଥିର ସ୍ଥଳ
ମଖମଲ୍ ଶାଢ଼ୀ ମୋର ଝିର ଝିର ନାଲ
ଦେଖିଛ କ ମତେ କେବେ
କାହା ବୋହୂ କହ ତେବେ,
ଛୁଅଁ ନା ଛୁଅଁ ନା ମତେ ଲାଜେ ଯିବ ମର
ପଡ଼ିଆରେ ବୁଲେ ମୁଁ ଯେ ସରଗର ପକ୍ଷୀ ।

( ୨ )

କଳା ନେଳି ମିଶା ମୋର ଚକ ଚକ ଡେଣା,
ଟିକି ସିନା ପାଟି ମୋର କାଠ କରେ କଣା,
ଫୁଲ ମତେ କରେ କୋଳ
ମହୁ ମତେ କରେ ଖେଳ,
ଗୁଣୁ ଗୁଣୁ ଗୀତ ଗାଏ ଫୁଲ ରେଣୁ ହର
କିଏ ମତେ ଦେଖିଛ ମୁଁ ସରଗର ପକ୍ଷୀ ।

( ୩ )

କଟି କଟି କଳା ଯେବେ ଘୋଟିଆସେ ରାତି
ମିଟି ମିଟି ଜଳେ ମୋର ଜୁଳୁଜୁଳୁ ବତି,
ଲିଭୁଥାଏ ଜଳୁଥାଏ,
ଗଛରେ ମୁଁ ଖେଳୁଥାଏ,
ବ୍ୟାଟେରି ଆଲୁଅ ମୋର ହୋଇବ କି ସର ?
ଅସରନ୍ତି ବତି ମୁଁ ଯେ ସରଗର ପକ୍ଷୀ ।

( ୪ )

ଝାଇଁ ଝାଇଁ ଖରାବେଳେ ଝିଇଁ ଝିଇଁ ଡାକ
ଲୁଚି ରହିଥାଏ ମୁହିଁ ଗଛ ଦେହେ ଲାଖି
ଚାଷୀ ମୋର ଡାକ ଶୁଣି
ବଲେ ଯାଏ ଧାନ ବୁଣି,
ଖରାଦିନ ଗଲେ ମୋର ଗୀତ ଯାଏ ସରି,
ଦେଖିଛ କି ମତେ ମୁଁ ଯେ ସରଗର ପରୀ ।

## ଚୂଟିଆ ମୂଷାର ଚାକିରୀ

ଅତି ଅଲଅଳ ଚୂଟିଆ ମୂଷା,
ବାପ ମାଆ ମଲେ ନାହିଁ ତା ବସା,
ଗୁଳକରି ଆଣେ ବୁଲୁଥିଲା ସେ,
ହଂସ ଘରେ ହେଲା ପୃଷ୍ଠାଣୀ ଶେଷେ
ଅତି ହରଷେ ।

ରୋଷେଇ କରେ ସେ ଯତନ କରି
ଗ୍ଲ' କରିଦିଏ ପିଆଲା ଭରି,
ସକାଳୁ ଉଠି, ସେବକଇ ଲୁଟି,
ଦିନଯାକ ଖଟି ନ ପାଏ ଛୁଟି
ଠିକ ମୂଷାଟି ।

ଜୁଳୁ ଜୁଳୁ ଆଖି ଗୋଳଆ ନାକ,
ଲଣ ଦୁଇପଟା ସିଧା ସଳଖ;
ସଫା ସୁତର ରଖଇ ଘର,
ହଂସ ସାଆନ୍ତଙ୍କୁ ଜୀବନେ ଡର,
ପୃଷ୍ଠାଣୀ ଗ୍ଲର ।

ବନେ ହାବୁଡ଼ିଲା ପୁଷି ମାଉସୀ,
ଲୁଚି ରହିଲା ସେ ଗାଡରେ ପଶି,
ଗୁଁ' ଭିଆର ହୋଇଲା ଡେରି,
ହଂସ ଛଡ଼ିଦେଲା ଗୋଇଠା ମାରି,
ଗଲା ଗୃକର ।

# ସବୁଠାରୁ ବଢ଼ିଆ

ସୁଲୁ ସୁଲୁ ପବନରେ ନିଦ ଆସେ ସଅଳ,
ଗୁଲୁ ଗୁଲୁ କଥା ମତେ ଲାଗେ ବଡ଼ କଅଁଳ ।

ରୋଗବେଳେ ଭଲ ଲାଗେ ମାଆ ଥିଲେ ପାଖରେ
ମଜା ଲାଗେ ଟେକା ଯଦି ବାଜଯାଏ ଲାଖରେ ।

ପରୀକ୍ଷାରେ ପାସ୍ କଲେ ମନ ହୁଏ ହରଷ,
ରଜବେଳ ଦୋଳଖେଳ ସବୁଠାରୁ ସରସ ।

ଫଳଖିଆ ସୁଖ ଯଦି ମିଳେ ଗଛପାଚିଲା,
ଜଳଖିଆ ସୁଖ ଯଦି ପେଟ ଥାଏ ଭୋକିଲା ।

ଖେଳିବା ମଉଜ ଯଦି ଥାଏ ଘାସପଡ଼ିଆ,
ଲଟେରୀ ଜିତିଲେ ଭାଇ ସବୁଠାରୁ ବଢ଼ିଆ ।

# ହୋରି

କାଲି ଛୁଟି ରେ ଭାଇ କାଲିକ ଛୁଟି,
ହୋରି ଖେଳିବ ବଡ଼ ସକାଳୁ ଉଠି,
ଗଣ୍ଡ ପାଇଲେ ହୋରି
ମାରିବ ପିଚକାରି
ଅବିର ପାଣି ଅଛି ବୋତଲ ଭରି
ମଉଜେ କାଟିଦେବ ଦିନଟା ସାରା ।

ରଖିଛି ଭଲ ଭଲ ରଙ୍ଗର ପାଣି
ନଳୀରେ ଭରି ଦେଇ ମାରିବ ଟାଣି,
ଖସିଯିବା ପଳାଇ
ସହଜ ନୁହେଁ ଭାଇ
ଜଣ ଜଣକେ ଗୋଟି ଗୋଟିଏ ବେଶ,
କାଲି ଦିନଟା କେହି ଦେବେନି ଦୋଷ ।

ବଜାରୁ ବାଛି ବାଛି ଆଣିଛି କିଣି,
ସୁନେଲି ରୂପେଲିର ଦୁଇଟା ମୁଣି,
ହଳଦୀ ନାଲି ନେଳି
ମିଶାଇ ଦେବ ଗୋଳି,
ମୁହଁରେ ଦେଲେ ବୋଳି ଦେଖିବ ମଜା,
କସରି ଭାଲୁ ପରି ଦିଶିବେ ଅଜା ।

ପଡ଼ିଲେ ପଡ଼ିବ ତ ଭାଉଜ ପାଳି,
ଜେଜେ ପାଖ ଯିବନି ଦେବେ ସେ ଗାଳି,
ସାଇରେ ଯେତେ ପିଲା
ଜଟିଆ, ନଣା, ବୁଲା,
ଆଜି ଯେତେକ ଖେଳ ପଡ଼ିବା ସାଙ୍ଗ,
ସବୁରି ଦେହେ କାଲି ବୋଳିବ ରଙ୍ଗ ।









# ସବୁ ଯିବ ଓଲଟି

ବହିଟିକୁ ଗିଳଦେଲେ ପାଠ ଯଦି ଆସିବ,
ବାଘ ଯେବେ ବଣ ଛାଡ଼ି ଘରକଣେ ପଶିବ,
ସାପ ଯଦି ଉଡ଼ିବେ,
ଗୋରୁ ଗଛ ଚଢ଼ିବେ,
ମହାନଦୀ ପାଣି ଯେବେ ଦୁଧ ଯିବ ପାଲଟି,
ସବୁ ଯିବ ଓଲଟି ।

ଆଠ ଚାରି ମିଶାଇଲେ ହେବ ଯଦି ଚଉଦ,
ଆକାଶରୁ ତଳେ ଖସି ପଡ଼ିଯିବ ବଉଦ,
କଆଁ ହେବ କାକର,
ବାବୁ ହେବେ ଚାକର,
ମାଛ ଦେଖି ଡରି ଯେବେ ପଳାଇବ ଶଲଟି,
ସବୁ ଯିବ ଓଲଟି ।

ରାତିଯାକ ଖରା ପଡ଼ି ହେବ ଯେବେ ଆଲୁଅ,
କନ୍ଦମୂଳ ପରି ମିଠା ହେବ ବଣ ଓଲୁଅ,
ଲୁହା ହେବ ନରମ,
ପାଣି ହେବ ଗରମ,
ଗୋଡ଼ ପରି ଲାଗିବ ମୋ କୁନଭାଇ ଗାଲଟି,
ସବୁ ଯିବ ଓଲଟି ।

ପାଣିରେ ଚାଲିବ ଯଦି ଗାଡ଼ି ଘୋଡ଼ା ମଟର,
ରେଡିଓରୁ ବାହାରିବ ଖାଲି କେଁ କଟର,
ହଳୁ କଥା କହିବେ,
ସିନେମାରେ ଗାଇବେ,
ଥିଏଟର ଘର ହେବ ଆମ ଇସ୍କୁଲଟି,
ସବୁ ଯିବ ଓଲଟି ।



ମାଆ ଯେବେ ଛୁଆଟିକୁ ଡାକଦେବ ଖୁସିରେ
କାହିଁକି ମୁଁ ମରୁଥିବି ଇତିହାସ ଘୋଷି ରେ ?
ମନ ସୁଖେ ବୁଲିବି,
ବାପ ମାଆ ଭୁଲିବି,
ଗଛଡାଳେ ଝୁଲିବି ମୁଁ ହୋଇ ଠିକ ଫୁଲଟି,
ସବୁ ଯିବ ଓଲଟି ।

## ହୋଇଥାନ୍ତି ଯଦି

ଦିନେ ଦିନେ ବସି ଚିନ୍ତୁରେ ମନେ,
ହୋଇଥାନ୍ତି ଯଦି କୁସୁମ ବନେ,
ଚହଟାଇ ଦଶ ଦିଗ ସୁବାସେ
ଚାହିଁ ରହିଥାନ୍ତି ନୀଳ ଆକାଶେ ।
ମଧୁପ ଗୁଞ୍ଜରି କହନ୍ତା ମୋତେ,
'ତୋ ପରି ସୁନ୍ଦର ନାହିଁ ଜଗତେ ।'
ପୁଣି ଭାବେ, ଫୁଲ ଦିନକ ଶୋଭା,
ହୋଇଥାନ୍ତି ତରୁ ନୟନଲୋଭା,
ଶ୍ୟାମଳ ପଲ୍ଲବେ ସଜାଇ ଦେହ,
ଖେଳୁଥାନ୍ତି ରଙ୍ଗେ ପବନ ସହ ।
ନାନା ଜାତି ପକ୍ଷୀ ସହିତେ ମିଶି
ସୁଖେ କାଟୁଥାନ୍ତି ଦିବସ ନିଶି ।
ପୁଣି ଚିନ୍ତଇ ତରୁ ଅଚଳ,
ପକ୍ଷୀ ପରି କିଏ ଚଳଚଞ୍ଚଳ ?
ହୋଇଥାନ୍ତି ଯେବେ ବିହଙ୍ଗ ମୁହିଁ,
ହିମାଳୟ ଚୂଡ଼ା ସାଗର ଛୁଇଁ
ମନ ସୁଖେ ଉଡ଼ନ୍ତେ ବିହରି
ସଫଳ କରନ୍ତି ଜୀବ ମୋହରି ।

ଏହ୍ନି ଭାବେ ଯେବେ ହୁଅଇ ଭୋଳ
ମନେ ପଡ଼େ ମୋର ଜନମି କୋଳ ।
ଏହାକୁ ଛାଡ଼ ମୁଁ ଯିବ ତ ନାହିଁ,
ଏ ସୁଖ ଶରଧା ପାଇବ କାହିଁ ?

## ରମା ଓ ମୂକୁତା

ରମା ପୋଷିଥିଲା ମେଣ୍ଢା ଛୁଆଟିଏ
ଭୁଲା ପର ତାର ଦେହଟି ଧଳା,
ଅତି ଶରଧାରେ ପୋଷିଥାଏ ତାକୁ
ନାଁ ଦେଇଥାଏ 'ମୁକୁତ ମାଳା' ।

ରମା ଯାହା ଖାଏ ଖୁଆଏ ତାହାକୁ
ରମା ଯହିଁ ଯାଏ ମୁକୁତା ଯାଏ,
ଦିନେ ଧାଇଁ ଧାଇଁ ରମା ପଛେ ପଛେ
ମୁକୁତା ଆସିଲା ଚାଟଶାଳୀ ଯାଏ ।

ପିଲାଏ ପଢ଼ନ୍ତି ଚାଟଶାଳୀରେ ସିନା
ମେଣ୍ଢାଛୁଆ କଣ ପଢ଼ିବ ପାଠ !
ମୁକୁତାକୁ ଦେଖି ହେଲେ ବଡ଼ ଖୁସି
ଖେଳିଲେ ନାଚିଲେ ସକଳ ଚାଟ ।

ଅବଧାନେ ତେଣୁ ତଡ଼ିଦେଲେ ତାକୁ
ତଥାପି ମୁକୁତା ନ ଯାଏ ଚାଲି,
ଏ ପାଖ ସେ ପାଖ ଝରକାରେ ଚାହିଁ
ଡାକଲେ ରମାକୁ ଅନାଏ ଖାଲି ।

ଚାହିଁ ଚାହିଁ ବେଳ ଘଣ୍ଟା ବାଜିଲା
ଚାହାଳୀ ଏଥର ହୋଇଲା ଛୁଟି,
ପିଲାଏ ଉଠିଲେ ବହି ହାତେ ଧରି
ମୁକୁତା ନାଚିଲା ଉମାକୁ ଭେଟି ।

## ଶଙ୍ଖଚିଲ

ଭଲ ଯୋଗେ ନଦ ଗଳିରେ ଯାଇ
ଶଙ୍ଖଚିଲ ମୁହଁ ଦେଖିଲି ଆଜି,
କି ଭଲ ଘଟିବ କପାଳେ ଅଛି,
କିଏ ଜାଣିଛି ?

ଲମ୍ବା ବରଗଛ, ନାହିଁ ତା ଉର,
ଚିଲ ବସିଥିଲା ଶିଖରେ ତାର,
ଚାରିଆଡ଼େ ଚାହିଁ ଦେଖୁଥିଲା ସେ,
ନୀଳ ଆକାଶେ ।

କାହିଁ କେତେ ଦୂରେ ନଦୀର ଜଳେ
ମାଛଟାଏ ଦେଖି ଖସିଲା ତଳେ,
ଝାମ୍ପି ନେଲା ତାକୁ ନଖରେ ଧରି
ବିଜୁଳି ପରି ।

ବରଗଛେ ଉଡ଼ି ବସିଲା ପୁଣି,
ଡାକ ଦେଲା ସରୁ ଗଳାକୁ ଟାଣି,
କି କଥା କହିଲା ବୁଝିଲି ନାହିଁ,
ରହିଲି ଚାହିଁ ।

# ପ୍ରଜାପତି

ପରଜାପତଟି　　　କେଡ଼େ ମନୋହର
ମହୁ ଖାଏ ବସି ଫୁଲେ,
ବାଡ଼ ବଗିଚ୍ଚରେ　　　ଘାସ ପଡ଼ିଆରେ
କେଡ଼େ ସୁଖେ ଉଡ଼ ବୁଲେ !

ଯେତେ ତାର ସାଥୀ　　　ଯେତେ ତାର ଜାତି
ସଭିଏଁ ଭଲରୁ ଭଲ,
କେଉଁ କାରିଗର　　　ଗଢ଼ିଛୁ କପଟ
ନ ପାରେ ମନେ ମୁଁ କଳ ।

ଫୁଲ ପତ୍ର ତାର　　　ଦେହଟି କଅଁଳ
ଛୁଟକନା ପତ୍ର ଡେଣା,
ମନ ହୁଏ ମୋର　　　ଧରନ୍ତ ତାହାକୁ
ଥୟରେ ବସିଲେ ସିନା ।

ଫୁଲରେ ବସିଲେ　　　ଛକ ଛକ ଯାଏ
ବଢ଼ାଏ ହାତ ମୁଁ ଧୀରେ,
ଡେଣାରେ ତାହାର　　　ଅଙ୍ଗୁଳି ବାଜିଲେ
ଉଡ଼ିଯାଏ ସେତ୍ତ ଖରେ ।

ଲେଉଟି ପୁଣି ସେ　　　ଫୁଲେ ଆସି ବସେ,
ଧୀରେ ମୁଁ ଯାଏ ତା କତି,
ବଡ଼ ଚଞ୍ଚଳ ସେ　　　ଉଡ଼ିଯାଏ, ଖାଲି
ଲଖି ରହେ ତାର କାନ୍ତି ।

# ବିରାଡ଼ିଙ୍କ ଚାହାଳୀ

ପାଠପଢ଼ା ନିଶାରେ
ବିରାଡ଼ିଛୁଆ ଚାହାଳୀ କଲେ ହୋଟେଲ ପାଖ ବସାରେ ।

ଛଇଳା, ଠୁଣ୍ଟ, ନେଉଳ, ଝୁଆଁ,
ସଭିଙ୍କି ଡାକ କହିଲା ଭୁଆ,
"ମନ ଲଗାଇ ପଢ଼ିଲେ ପାଠ ନାଆଁ କରିବ ସଂସାରେ,
ଫେରିବ ଆମ ଦଶା ରେ ।"

କିଏ ଧଇଲା ସିଲଟ ଖଡ଼ି,
ଗାରେଇଗଲା ଧାଡ଼ିକ ଧାଡ଼ି,
ଗଣିତ ବହି ଭିତରେ ଥିଲା ଯେତେ ଅଙ୍କକଷା ରେ,
ପାଠପଢ଼ା ନିଶାରେ ।

ଆଖିରେ ଜଣେ ଚଷମା ଦେଇ
ପଢ଼ିଲା ବସି ଭୂଗୋଳ ବହି,
ଦେଶ ବିଦେଶ ସହରଯାକ ଦେଖିଲା ସବୁ ନକ୍ସାରେ,
ପାଠପଢ଼ା ନିଶାରେ ।

କିଏ ବସିଲା ସିଲେଇ କରି,
ଆଉ ଜଣେ କେ ବେହେଲା ଧରି
ମନ ଲଗାଇ ଶିଖିଲା ଗୀତ ଓସ୍ତାଦ୍ ହେବା ଆଶାରେ,
ପାଠପଢ଼ା ନିଶାରେ ।

ଶନିବାରଟା ଅଧାରୁ ଛୁଟି,
ଡ୍ରିଲ୍ କରନ୍ତି ସକାଳୁ ଉଠି,
ମଣିଷ ପିଲା ପଢ଼ନ୍ତି ଯାହା ଶିଖନ୍ତି ସବୁ ହଂସାରେ,
ପାଠପଢ଼ା ନିଶାରେ ।

ଘରେ ହୋଇଛି ଗଣେଶ ପୂଜା,
ପଲଉ, ଖିରି, ପାମ୍ପଡ ଭଜା,
ଭୋଗ ତିଆରି ଲାଗିଛି ଖାଲି, ଘନଟାପାକ ଓଷା ରେ
ପାଠପଢ଼ା ନଶାରେ ।

ଠାକୁରଟିଏ ହୋଇଛି କଣା,
ପୂଜା କରନ୍ତି ବଲୁଆନନା,
ବଗଡ଼ହୁଆ ବୋଲନ୍ତି ଗୀତ ମ୍ୟାଉଁ ମ୍ୟାଉଁ ଢଙ୍ଗରେ,
ପାଠପଢ଼ା ନଶାରେ ।

ଏତିକବେଳେ ଆସିଲା ଠୂରି,
ପେଟର ଜାଳା ସହି ନ ପାରି
ଗାଉଁକନେ ସେ ମାଡ଼ ବସିଲା ଗଣେଶଙ୍କର ମୂଷାରେ,
ପଶିଗଲା ତା ଓଷା ରେ ।

ମାଟିର ମୂଷା ଜାଣିନି ସେ ତ,
ସଟାଂ ସଟାଂ ବସିଲା ବେତ,
ଭୂଆ କହିଲା, "ବାହାର ଏଠୂ"; ଉଡ଼ିଗଲା ତା ହଂସା ରେ,
ପାଠପଢ଼ା ନଶାରେ ।

ପିଲାଏ ସବୁ ଗୁନଆଁ ହୋଇ
ଗୃହାଲୀ ଗୁଡ଼ ଗଲେ ପଳାଇ,
ଭୋଗକୁ ଧରି ବଲୁଆନନା ଖସିଲା ତାର ବସାରେ,
ତଳୁ କଣିବା ଆଶାରେ ।

ଗଣେଶ ପୂଜା ହୋଇଲା ମାରି,
ବଗଡ଼ ଆଉ ନ ହେଲେ ଧରି,
ସେଇ ଘନଠୁଁ ପିଲଟି ବନ୍ଧି ଗୁଳରେ ହେଲା ଖୋସାରେ
ଗୁଡ଼ଗଲା ନଶା ରେ ।

# ପାରିବି ମୁଁ କରି

ଏତେ ବଡ଼ ଏଇ ସଂସାର ଭିତରେ
ଅଟେ ସିନା ମୁହିଁ ସାନ,
କାମ କରିବାକୁ ହାତ ଅଛି ମୋର
ଭାବିବାକୁ ଅଛି ମନ ।

ବରଷା ଆସିବ ନଈବଢ଼ି ହେବ
ବିଲବାଡ଼ି ଯିବ ଧୋଇ,
ଗରିବ କୁଡ଼ିଆ ମାଟିରେ ମିଶିବ
ଭାସିଯିବେ ଗୋରୁ ଗାଈ ।

ଏତେ ପାଣି ସୁଅ ରୋକିବାକୁ ସିନା
କରି ନ ପାରିବି କିଛି,
ଦୁଃଖୀ ଭାଇଟିର ଆଖିରୁ ପାରିବି
ଲୁହ ଦୁଇ ଧାର ପୋଛି ।

ଖରା ବରଷାରେ କୃଷୀ ଭାଇ ଖଟି
ବିଲରେ ଫଳାଏ ଧାନ,
ବଢ଼େଇ କମାର, ଧୋବା ଆଦି ଯେତେ
ଖଟୁଛନ୍ତି ନିତି ଦିନ ।

ଏତେ ବଡ଼ କାମ କରିବାକୁ ସିନା
ନାହିଁ ମୋ ହାତରେ ବଳ,
ମାଆ ସଙ୍ଗେ ମିଶି କରିପାରିବି ମୁଁ
ଘରଟିକୁ ନିରମଳ ।

ଦଇବୀ ଘଟଣା ଘଟୁଅଛୁ ନିତ
ଶୁଣି ଲାଗେ ମନେ ଡର,
ରୋଗ ଶୋକ ସବୁ ବିକଳରେ ଲୋକେ
ହେଉଛନ୍ତି ହରବର ।

କାହିଁ କେତେ କଥା ଘଟୁଛି ସଂସାରେ
ନ ପାରିବି ସିନା ଦେଖି,
ଭଗବାନ ହାତକୁ ଭକ୍ତି ମୁଠେ ମୁଠେ
ଦେଇ ପାରିବ ମୁଁ ଟେକି ।

ଏତେ ବଡ଼ ଏହି ସଂସାର ଭିତରେ
ଅଟେ ସିନା ମୁହିଁ ସାନ,
କାମ କରିବାକୁ ହାତ ଅଛି ମୋର
ଭାବିବାକୁ ଅଛି ମନ ।

## ରାଜାଙ୍କର ଶିକାର

ଉଡ଼ିଗଲେ ଗେଣ୍ଡାଳିଆ ଝାଡ଼ିଦେଲେ ପକ୍ଷି
ରାଜା ଯିବେ ମୃଗ ମାରି, କାହିଁ ଗଲେ ରକ୍ଷୀ ?
ଖଣ୍ଡଗିରି ଅରଣ୍ୟରେ ହୋଇଅଛି ଆଡ଼,
ରାଜା ଯିବେ ମୃଗ ମାରି, ସଜ ହେଲା ଗାଡ଼ି ।
ମହା ଘୋର ଗହନ ସେ ଖଣ୍ଡଗିରି ବନ,
ମହାବଳ ଶ୍ୱାପଦମାନେ କରେ ଗରଜନ ।
ବରାହ ଗଣ୍ଡୁଳ ଭାଲୁ ପଲ ପଲ ହୋଇ
ବଣବୁଦା ଗହଳରେ ଲୁଚିଥାନ୍ତି ଶୋଇ ।
କଟିକଟି ଅନ୍ଧକାର ଦେଖି ଲାଗେ ଭୟ,
ସେହିଠାରେ ରାଜା ଯାଇ ଆଡ଼ କଲେ ଥୟ ।

ନଣବଦ ନକାଞ୍ଚନ ଥିଲା ସେହି ବନ,
କାହୁଁ ଉଠିଲା ଏ ପାଟିଗୋଳ ଘନ ଘନ ?
ପାଇକ ବେଠିଆ ଘେରି ଓଗାଳଲେ ରାହା;
ବନ୍ଧୁକ ଫୁଟିଲା ଡୋଓଡାଆ ଡୋଓଡାଆ ।
କେତେ ଜନ୍ତୁ ପଳାଇଲେ ନିଆଁ ହୁଳା ଦେଖି,
ଠେଲି ପେଲି ମହାଭୟେ ଲାଙ୍ଗୁଡ଼କୁ ଟେକି ।
କେତେ ଜୀବ ଗୁଳି ଖାଇ ହରାଇଲେ ପ୍ରାଣ,
ରାଜା ଆଦେଶିଲେ 'ବେଗେ ଗାଡ଼ି ମୋର ଆଣ ।'
ସହସା ଆସିଲା ମାଡ଼ି ଘଡ଼ଘଡ଼ି ଝଡ଼
ଦଳବଳ ଘେନି ରାଜା ଫେରିଗଲେ ଗଡ ।

ଉଠାଇଲା କଳା ମେଘ, ବରଷିଲା ପାଣି,
କାହିଁ ଗଲେ ରାଜା ବୋଲି କାନ୍ଦୁଥିଲେ ରାଣୀ ।
"ଏ ଘୋର ବିପତ୍ତିବେଳେ ଭଗବତୀ ମାଆ,
ତୁମେ ନ ରଖିଲେ ଆଉ କିଏ ଅଛି ସାହା ?"
ଦେଖୁ ଦେଖୁ ପହଞ୍ଚିଲା ରାଜାଙ୍କର ଗାଡ଼ି,
କହୁଁଥାଲେ ଠିଆ ହୋଇଗଲେ ଧାଡ଼ି ଧାଡ଼ି ।
ଉଡ଼ିଗଲେ ଗେଣ୍ଡାଳିଆ, ଝାଡ଼ିଦେଲେ ପକ୍ଷି,
ରାଜା ଗଲେ ଉଆସକୁ; ଫେରିଗଲେ ରକ୍ଷୀ ।

## ଟେବୁଲକୁ କହେ ଚଉକି

ଟେବୁଲକୁ କହେ ଚଉକି—
"ଜଣବା ଟିକିଏ ସଉକ ;
ସବୁବେଳେ ଏଇ ଘର ଭିତରେ
କି ଖରା ବରଷା କିବା ଶୀତରେ

ବସି ବସି ମୋତେ ଲାଗୁଛି ଚଟା,
ଖୋଲ ହେଲାଣି ଏ ଗୋଡ଼ ଯୁଗଟା;
ବୁଲିବାକୁ ଟିକେ ହେଉଛି ମନ,
ଦେହରେ ଲାଗିବ ଖୋଲା ପବନ,
କରିବା ଟିକିଏ ସଉକ"—
ଟେବୁଲକୁ କହେ ଚଉକ ।

ଟେବୁଲ କହିଲା, "ଭଉଣୀ !
ସାହସ ତ ମୋର ପାଉନି ।
ଅତ ଅସମ୍ଭବ କଥାଟା କହୁ,
ସଉକଟା ତୋର ସେତକ ଥାଉ ।"
ତା ଶୁଣି ଚଉକ କହିଲା, "ଭାଇ,
ଚାରି ଗୋଡ଼ ଥାଇ କହୁଛ 'ନାହିଁ' ?
ଦୁଇଟା ଗୋଡ଼ରେ ମଣିଷ ଚାଲେ
କି ଅଛି ଅସାଧ୍ୟ ସାହସ ଥିଲେ ?"
ଟେବୁଲ ଶେଷରେ କହିଲା—
"ସାହସ ଏଥର ପାଇଲା ।"

ଆଉ ଭୟ ନାହିଁ କାହାର,
ଦୁଇଜଣ ଗଲେ ବାହାର ।
ଚାଲି ଯାଉଥାନ୍ତି ଗୋଡ଼ ବାଡ଼େଇ,
ଗାଡ଼ି ଘୋଡ଼ା ସବୁ ଗଲେ ଆଡ଼େଇ;
ବଜାର ଭିତରେ ଦେଖିଲେ ବୁଲି,
ଠକ ଠକ ଶୁଭେ ଶବଦ ଖାଲି ।
ବାଟୋଇ ରହିଲେ ଦେହକୁ ଜାକି,
ଭାବିଲେ—ଏ କିବେ ସିନେମା ଦେଖି;
ଟେବୁଲ ସାଙ୍ଗରେ ଚଉକ,
ଦେଖ ଏହାଙ୍କର ସଉକ !

ଫେରିଲେ କଟେଶ୍ୱ କୋଠାରୁ,
ବାଟବଣା ହେଲେ ସେଠାରୁ ।

ଗଳରେ ବୁଲିଲେ ଢଣଢାଯାକ,
ଏକାଳେ ଭେଟିଲେ ବୁଢ଼ା ବତକ;
ସାଥିରେ ଥିଲ ତା ଚୁଟିଆ ମୁଷା
ଦୁହିଁଙ୍କୁ ଯାଚିଲେ ଦୁଇ ପଇସା,
ସେଇ ଦୁଇଜଣ ବାଟ ପଗ୍ଭରି
ନେଇଗଲେ ତାଙ୍କୁ ଘରକୁ ଧରି ।
ଏଥର ପାଇଲ ବିଶ୍ୱାସ,
ଟେବୁଲ ମାଇଲ ନିଶ୍ୱାସ ।

ଖାଇକୁ ପଗ୍ଭରେ ଚଉକି,
"ଭପୁ ଅଛୁ ମନେ ଆଉ କି ?"

ଟେବୁଲ କହିଲ, "ଶୁଣ ଭଉଣି !
ଆଣ ପାଉଁରୁଟି, ଆଣ ଲହୁଣୀ;
ବୁଲି ଆସିବାରୁ ମନଟା ଖୁସି,
ଭଲ କରି ଗ୍ଭଲ ଖାଇବା ବସି ।"
ବତକ ମୁଷାଙ୍କୁ ସାଙ୍ଗରେ ଖୋଇ
ନିଘୋଡ଼ ନିଦରେ ପଡ଼ିଲେ ଶୋଇ ।
ହେଲେ ବି ଟେବୁଲ ଚଉକି,
ନାହିଁ କି ତାଙ୍କର ସଉକି ?

## କଳଘୋଡ଼ା ଓ କଳପକ୍ଷୀ

ଘୋର ରଡ଼ ଛାଡ଼ ଭୂଇଁ ଦୁଲୁକାଇ
ଧାଉଁଥିଲା ରେଳଗାଡ଼ି,
ଗୁହାଁଳି ଉପରେ ଉଡ଼ାଜାହାଜଟା
ଚିଲ ପରି ଯାଏ ଉଡ଼ି ।

ରେଳ ତାକୁ ଡାକି ଦୂରରୁ କହିଲା
ଶୁଣ ଆରେ କଳପକ୍ଷୀ,
ପଳା ନା ପଳା ନା ଡରି ଯାଉଛୁ କି
ମୋର ଏଡ଼େ ରୂପ ଦେଖି ?

କେଉଁ ଗାଇଜକୁ ଏଡ଼େ ତରତରେ
ଉଡ଼ି ଯାଉଛୁ ରେ କହ,
କିଛି ତୋର ହାନି କରିବି ନାହିଁ ରେ
ଦୁଃଖ ସୁଖ ହେବା ରହ ।"

ଉଡ଼ାଜାହାଜ—

"ପଳାଉନାହିଁ ମୁଁ ଆରେ କଳଘୋଡ଼ା
ଡରୁନାହିଁ ଦେଖି ତୋତେ,
ନିଜକୁ ଭାବୁଛୁ ବଡ଼ ବୋଲି ସିନା
ପୋକପରି ଦିଶୁ ମୋତେ ।

କଥା କହିବାକୁ ବେଳ ନାହିଁ ମୋର
ଯାଉଛି ମୁଁ ବହୁ ଦୂର,
ଶହ ଶହ କୋଶ ବୁଲିବି ଘଡ଼କେ
ନ ଥକିବ ଡେଣା ମୋର ।

ଭୁ ସିନା ଢ଼'କୋଣ          ଘୂରିକୋଣ ଘୂଲି
ଥକାମାରି ହେବୁ ଠିଆ,
କୋଇଲା ଖେଇବାଇ          ପାଣି ପିଇ ପିଇ
ଯିବୁ ଆରେ ବାହାପିଆ ।
ସାଥୀ କରୁ ମୋତେ          ଲାଜ ନାହିଁ ତୋତେ
ମୁଁ ପରା ଶୂନ୍ୟରେ ଉଡ଼େ,
ଗୋଟିଏ ବାଟରେ          ଲୁହା ଆକଟରେ
ମୁଁ କ ତୋହପରି ଗଡ଼େ ?"

ରେଲଗାଡ଼ି—
"କାଲିକା ପିଲା ଭୁ          ଏଡ଼େ ତୋ ବଡ଼େଇ
ମୋତେ କରୁ ପୁଣି ଥଟ୍ଟା,
ଜାଣିଛୁ କ କେଡ଼େ          ବଳୁଆ ଅଟେ ମୁଁ
କେଡ଼େ ଲମ୍ବା କେଡ଼େ ମୋଟା ?
ଲକ୍ଷେ ମହଣର          ବୋଝ ବୋହି ପୁଣି
ବସାଇ ହଜାର ଲୋକ,
ବସୁଧା ଥରାଇ          ଧାଇଁଥାଏ ମୁହିଁ
ମୋତେ କହୁ ପୁଣି ପୋକ !
ଅଳପ ବୁଦ୍ଧି ତ          ଦେଇଛୁ ବିଧାତା
କ କହିବ ଆଉ ତୋତେ,
ତଳକୁ ଆସିଲେ          ଦେଖନ୍ତୁ ସିନା ରେ
ବଡ଼େଇ ତୋହର କେତେ ।"
ଏତେ କହି ରେଳ          ରାଗେ ଗରଗର
ଉପରେ ଫୁଙ୍କିଲା ଧୂଆଁ,
ତଳକୁ ନ ଚାହିଁ          ଉଡ଼ାଜାହାଜଟା
ପଳାଇଲା ଏକମୁହାଁ ।

# ପରୀରାଇଜ

ଘୋଡ଼ା ଚଢ଼ି ଯାଉଥିଲା ଝିଅଟି
ଗଛମୂଳେ ଘୋଡ଼ାଟିକୁ ରଖିଲା,
କାହାକୁ ସେ ଖୋଜୁଥିଲା କେଜାଣି
ମତେ ଦେଖି ହାତ ଠାରି ଡାକିଲା ।

ଆଖିରେ ତା ଥିଲା କବା କୁହୁକ
କି ଶକତି ଥିଲା ତାର ଡାକରେ,
ଟାଣି ହୋଇ ଗଲି ଗଛମୂଳକୁ
ମତେ ନେଇ ବସାଇଲା ପାଖରେ ।

ଘୁହୁଁ ଘୁହୁଁ ନେଲା ମତେ ଉଡ଼ାଇ
କିଛି କହି ନ ପାରିଲି ଭରସି,
ଦେଖାଇଲା ନୂଆ ଏକ ରାଇଜ
ଆଲୁଅରେ ଆଖି ଗଲା ଝଲସି ।

ଘୁରପଟେ ଘେରା ସୁନା ପାଚେରି
ଦୁଧ-ନଈ ବହୁଛି ତା ଧାରରେ,
ବଗିଚାରେ ଗଛମାନ ନଇଁଛି
ପିଠା, ଲଡ଼ୁ, ରସଗୋଲା ଭାରରେ ।

ଭଜାମାଛ ଉଡ଼ି ଉଡ଼ି ଡାକୁଛି—
'ଆସ ଭାଇ କିଏ ମତେ ଖାଇବ',
ଶେଯ ସବୁ ଗୋଲାପର ପାଖୁଡ଼ା
ଡାକୁଛନ୍ତି, 'ଆସ କିଏ ଶୋଇବ' ।

ଖଗ ସେଠି ସୁବାସିତ ଶୀତଳ
　　　　ମେଘ ଝିର ଝିର ମହୁ ବରଷେ,
ଟିକି ଟିକି ଡେଣାମାନ ହଲାଇ
　　　　ପକ୍ଷୀମାନେ ନାଚୁଥିଲେ ହରଷେ ।

ମନ ମୋର ହେଲା ଯିବ ଓହ୍ଲାଇ
　　　　ପକ୍ଷୀ ସାଥେ ମିଳିମିଶି ଖେଳିବ,
ମହୁ ଖାଇ ବଗିଚାର ଗଛରୁ
　　　　ମନ ଭରି ରସଗୋଲା ତୋଳିବ ।

ଝିଅଟିକୁ ଖୋଜି ଦେଖେ ନାହିଁ ସେ
　　　　ଖସି ପଳାଇଛି କେଉଁ ବାଟରେ,
ଆଖି ଖୋଲି ଜାଣିଲି ଏ ସପନ
　　　　ଶୋଇଛି ମୁଁ ଆମ ଘର ଖଟରେ ।

## ହରିତାଳିକା

କାଲି ପରା ମା ! ହରିତାଳିକା
　　　　ସ୍କୁଲ୍‌ହାଲି ଅଛି ଛୁଟି,
ଆମେ ତ ଯିବୁ ଫୁଲ ତୋଳି ମା !
　　　　ବଡ଼ ସକାଳୁ ଉଠି ।

ସଡ଼କ କଡ଼, ପୋଖରୀ ହାଡ଼,
　　　　ବାଡ଼ ବଗିଚା ବୁଲି
ଯାହା ଯେଉଁଠି ପାଇବୁ ଆମେ
　　　　ଆଣିବୁ ଆଗ ତୋଳି ।

କାଣିଆ, ଗୋପୀ ଗଛ ଚଢ଼ାଳ
ପହଁର ଜାଣେ ମୁହିଁ,
ଗୋଟାଏ ହେଲେ ଫୁଲ କାହାକୁ
ଛୁଆଇଁ ଦେବୁ ନାହିଁ ।
କେଶରପୁର ଗୁହାଳୀ ପିଲ
ଆସିବେ ଯନ୍ଧ ପଛେ,
ଗୋଟିଏ ଫୁଲ ପାଇବେ ନାହିଁ
ଅନାଇ ଗଛେ ଗଛେ ।
ନିଦଟା କାଲେ ଭାଙ୍ଗିବ ନାହିଁ
କହୁଛି ତେଣୁ ଡରେ,
ମନେ କର ମା ! ବଡ଼ ସକାଳୁ
ଉଠାଇ ଦେବୁ ମତେ ।

# ଦୋଳ ଉତ୍ସବ

ଶୀତ ପରେ ଋତୁ ବସନ୍ତ   କ୍ରମେ ଛୁଇଁଲା ଧରା,
ଚଉଦିଗେ ଦେଲା ମେଲାଇ   ତାର ଶୋଭା-ପସରା ।
କଅଁଳ ପତରେ ମଣ୍ଡିଲେ   ଅଙ୍ଗ ତରୁଲତାଏ
ଲୁଚି ବସି ତହିଁ କୋଇଲି   କୁହୁ ସଙ୍ଗୀତ ଗାଏ ।
ଦକ୍ଷିଣା ପବନ ପରଶେ   ଫୁଲ ଉଠିଲେ ହସି,
ମହକିଲା ଆମ୍ବ ବଉଳ   କେବା ଧଇଲା କଷି ।
ଗୋପାଳ ବାଳକେ ମୋହିଲେ   ମନ ବଇଁଶୀ ବାଇ,
ଗାଆଁ ଗହଳରେ ଏକାଳ   ଶୋଭା ନୁହଇ କହି ।
ଚାହିଁ ରହିଥିଲେ ପିଲାଏ   କେବେ ଆସିବ ଦୋଳ,
ସାଙ୍ଗ ସାଥୀ ମିଳି ସରବେ   ସୁଖେ ହୋଇବେ ଭୋଳ ।

ଦୋଳଛୁଟି ହେଲା, ଏଥର    ମନ ହେଲା ଉଛନ୍ନ,
ଧାଇଁଲେ ଯେ ଯାହା ଆବାସେ    ସୁଖେ ବାଳକଗଣ ।
ବାଟେ ଘାଟେ ଉଚ୍ଛ ଶୁଭିଲା    ଦୋଳ ଘଣ୍ଟ ଶବଦ,
ଖୋଳ କରତାଳ ସହିତେ    ଶଙ୍ଖ କାହାଳିନାଦ ।
ରଙ୍ଗେ ସୁଶୋଭିତ ବିମାନେ    ବିଜେ ହେଲେ ଠାକୁର,
ବୁଲି ବୁଲି ଭୋଗ ଖାଇଲେ    ବିଶେ କି ମନୋହର !
ଘରେ ଘରେ ହେଲା ଉତ୍ସବ    ଦୋଳ ପୁନଅଁ ଦିନ,
ଯାତରା ମେଳନ ତୋଟାରେ    ଠୁଳ ହେଲେ ବିମାନ ।
କାହିଁ ନାଟ, କାହିଁ ସଙ୍ଗୀତ,    କାହିଁ କୀର୍ତ୍ତନ ମେଳ,
ବାଣ ରୋଷଣିରେ ଦିଶିଲା    ଚଉଦିଗ ଉଜ୍ଜ୍ୱଳ ।
ଫଗୁ ବୋଳାବୋଳି ମଉଜ    ଏହି ଫଗୁଣ ମାସେ,
ଭଲ ଭଲ ରଙ୍ଗ ପାଣିରେ    ସାରା ସହର ହସେ ।
ହୋରି ଖେଳେ ସର୍ବେ ପାଗଳ    କିବା ଗରିବ ଧନୀ,
ପିଚକାରି ଧରି ମାରନ୍ତି    କିଛି ବାଧା ନ ମାନି ।
ଗୁହୁଁ ଗୁହୁଁ ଛୁଟି ପୂରିବ    ମନେ ଆସିବ ଦୁଃଖ,
ବରଷକଯାଏ ମିଳିବ    ନାହିଁ ଆଉ ଏ ସୁଖ ।
ଦୋଳ ପଛେ ପଛେ ପାସୋର    ଯିବ ଅବିର ହୋରି,
ଏ ସୁଖ ଉତ୍ସବ ଲାଗିବ    ସବୁ ସପନ ପରି ।

## ବିରୁଡ଼ି ଓ ମହୁମାଛି

ଶୂନ୍ୟକୁ ଅନାଇ ବୁଲୁଥିଲା ଦିନେ ବିରୁଡ଼ି ଏକା,
ଗୁଣୁ ଗୁଣୁ ଡାକ ଉଡ଼ି ଯାଉଥିଲା ମଧୁମକ୍ଷିକା ।
ବିରୁଡ଼ି ପଚାରେ, "କହିବୁ କି ସଖୀ, କପାଇଁ ନରେ
ମୋତେ ଘୃଣା ତୋତେ ଆଦରନ୍ତି ଏତେ ଶରଧାଭରେ ?
ମୋ ଅଙ୍ଗ-ଆକାର, କନକ ବରଣ ରୂପମାଧୁରୀ
ପାଇବୁ ନାହିଁ ତୁ ହେଉଥିଲେ ଶତ ବରଷ ଝୁରି ।

ତଥାପି ମାନବେ ନ କରନ୍ତି ମୋତେ ଆଦର ଲବେ,
କହ କି କାରଣେ?" ମାଛି କହେ, "ସେ ତ ନୀତି ଏ ଭବେ ।
ରୂପଛଟା ତୋର ରମଣୀୟ, ପୁଣି ଦେଖଣା ସୁନ୍ଦରୁ,
ତୁ ଯେ ଅକାରଣେ ନିଷ୍ଠୁର ମାନବେ ଜଳାଇ ମାରୁ ।
ମୋ ରୂପ ଝଟକ ନୁହଇ ତୋ ପରି ଉଜ୍ଜ୍ୱଳ ସତ,
କିନ୍ତୁ ମୁଁ ନିର୍ଦ୍ଦୋଷ ମଧୁ ବିତରଇ ଜାଣେ ଜଗତ ।
କଠୋର ସ୍ୱଭାବ ଯାହାର, ଅଟେ ଏ ସଂସାର ନୀତି,
ଯେତେ ସୁରୂପ ସେ ହୋଇଥାଉ ପଛେ ନ ଲଭେ ପ୍ରୀତି ।"

## ଧଳା ଓ କଳା

ଧଳା କଳା ଦୁହେଁ ଦିନେ ଲଗାଇଲେ କଳି,
କଳାକୁ ଅନାଇ ଧଳା ଆଗ ଦେଲା ଗାଳି—
"ତୋର ଗୁଣଗ୍ରାମ ଆରେ ବାଖ୍ୟାନିବି କେତେ,
ମୋ ସାଥିରେ ମିଶୁ ପୁଣି ଲାଜ ନାହିଁ ତୋତେ ?
ମୋର ପାଦଧୂଳି ସଙ୍ଗେ ହେବୁ କିରେ ସରି,
ବିଧାତା ଗଢ଼ିଛି ତୋତେ ଅସୁନ୍ଦର କରି ।
ମୋ ରୂପରେ ନାହିଁ ମଳି, ଦେହ ମୋର ସଫା,
ଜନ୍ମଗତ ଧଳା ବୋଲି ଦିଶେ କେଡ଼େ ତୋଫା ।
ମଲ୍ଲୀ, କଇଁ, ତଗର ମୋ ତେଜ ଲାଗି ତୋରା,
ମଣିଷକୁ କରେ ମୁହିଁ ଶଙ୍ଖପରି ଗୋରା ।
ଭାତ, ଦୁଧ, ଖିରି, ଛେନା, ରସଗୋଲା, ଦହି,
ଟଙ୍କା, ରୂପା, କଂସା, ଥାଳି, ଲୁଗା, ଖଡ଼ି, ବହି,
ଧଳା ଘୋଡ଼ା, ଧଳା ଗୋରୁ, ଧଳା ବଗ, ହଂସ,
ଯେତେ ଭଲ ଚିଜ ସବୁଥିରେ ମୋର ଅଂଶ ।"

କଳା ବୋଲେ, "ଭାଇ, ଯାହା କହିଲୁ ତା ସତ,
ଧଳାଠାରୁ କଳା ହୀନ ସବୁରି ଏ ମତ ।
ସେଥିପାଇଁ ଛଳେ ହେଲେ ଦୁଃଖ ନାହିଁ ମୋର,
ମୋହଲାଗି ଯେଣୁ ରୂପ ଝଟକଇ ତୋର ।
ଅନ୍ଧାର ନ ଥିଲେ ଜହ୍ନରାତି ଶୋଭା କାହିଁ,
ଲେଖିବ କି ଖଡ଼ି ଯଦି କଳାପଟା ନାହିଁ ?
ବହି କାହୁଁ ଛପାହେବ କଳା କାଳି ବିନା,
ଭାତ ଖିଆ ସୁଆଦିଆ ହାଣ୍ଡିଯୋଗୁ ସିନା ।
କଳା ଡୋଳା କଜଳରେ ଆଖି ସିନା ଶୋହେ,
କଳା ରୂପ ଧରି କୃଷ୍ଣ ଜନମନ ମୋହେ ।
ଭଅଁର, କୋଇଲି, କାଳୀ ଗାଈ, କଳା କେଶ,
ପଥର କୋଇଲା ଲାଗି ଧନୀ ଆଜ ଦେଶ ।
ସୁଖ ଦୁଃଖ ଦିନରାତି ଦୁହିଁଙ୍କୁ ମିଶାଇ
ସୁନ୍ଦର ସଂସାର ଦେଖ ଗଢ଼ିଛନ୍ତି ସାଇଁ ।
ବଡ଼ ସାନ କଥା ଭାଇ ନ ଧର ତୁ ମୁଖେ,
ଯେ ଯାହାର କାମ କରି ରହିଥିବା ସୁଖେ ।

## ବଗବଗୁଲି

ବଗବଗୁଲି
ବଜାର ସଉଦା କରିବେ ବୋଲି
ବାହାରିଲେ ଦିନେ କଟକ ବୁଲି ।
ସକାଳୁ ଆସି
ଦୁଆରେ ବସି
କହି ଯାଇଥିଲା ଚିଲ ମାଉସୀ—

"ଜାତକ ଯୋଟକ ସବୁ ମିଳଚ,
ହଆନଆ କଥା ସବୁ ଛୁଡ଼ଚ,
ଆଜକ କେବଳ ରହିଚ ବାକି,
କୁଣିଆ ଆସିବେ କନଆ ଦେଖି ।

ସଅଳ ସଅଳ ପାଇଟି ସାର,
ଖାଇବା ଜନଷ ତିଆର କର ।
ନୂଆ ବେଙ୍ଗଫୁଲ ଗ୍ରେଟିଆ କ୍ଉ,
ଚନ ପଡ଼ ହବ ମିଠା ପଲଉ ।
କଙ୍କଡ଼ା କଲଜା କଇଁକେଣର
ପୋଶ୍ଷ ପକାଇ କର ବେସର,
ଭ୍ଜି ଚଇଁ ଡ଼ୁରେ କଲମ ଶାଗ,
ଅଳପ ମସଲା ଅଳପ ରାଗ ;
ହରଡ଼ ଡାଲିକି କଇଁଛ ଘିଅ,
ଭଲ ଲଗିବ ଲେ ବଗୁଲି ଝିଅ ।"

ସକାଳେ ଆସି
ଚଲ ମାଉସୀ
ସଉଦା ତାଲିକା ଦେଇଚ ଲେଖି ।
କୁଣିଆ ଆସିବେ କନଆ ଦେଖି ।

ତାଲିକା ପଢ଼ି
ଡେଣାକୁ ଝାଡ଼ି
ବଗୁଲି ଯୋଡ଼ଲା ଗୋଟିଏ ଧାଡ଼—
'ଝିଅ ପାଇଁ ଖଣ୍ଡେ ସରସା ଶାଢ଼ୀ' ।

ବଜାର ସଉଦା ତାଲିକା ଶୁଣି
ବଗ କାଢ଼ିଦେଲା ପଇସା ମୁଣି ।
ମନଟ ଖୁସି,
କହିଲା ହସି—
"ଡେରି କର ନାହିଁ ଆସ ଗୋ ରାଣୀ,
ଝୁଡ଼ରେ ପୂରାଅ ପଇସା ଗଣି ।"

କଥା ବାହାରୁନ ବଗୁଲି ମୁଖେ,
ଆଖି ବୁଜ ବୁଜ ବଅଁଙ୍କୁ ଡାକେ—
'ଆହେ ଚକାଡୋଳା ମାଆ ସାରଳା,
ଏତେ ଦିନେ ମୋର ଭାବନା ଗଲା ।'
"ଚାଲ ସଅଳ
ଯାଉଛି ବେଳ,
କଟକ ବଜାର ବଡ଼ ଗହଳ,
କୁଣିଆ ଆସିବେ ମନରେ ଭାଳ ।"
ପଗଡ଼ି ଭିଡ଼ି
ଚପଲ ମାଡ଼ି
ବେକରେ ଝୁଲାଇ କାଇଁଚ-ଝୁଡ଼ି
ଗଲେ ବଗ ଦୁହେଁ ପଲକେ ଉଡ଼ି ।
ଅଧ ବାଟରେ
ପାଣି ଘୂଠରେ
ବଗକୁ ଅନାଇ ବଗୁଲି ଠାରେ—
"ଡଲେ ଦେଖ କେତେ କଲମ ଶାଗ,
ସେଇତକ ଗୁଲ ତୋଳିବା ଆଗ ।"
ପାଦରୁ ଝିଅଟ ଚପଲ ଖୋଲି
ପାଣିରେ ପଶିଲେ ବଗବଗୁଲି ।
ଏପାଖେ ସେପାଖେ ହଲୁଚି ପାଣି,
ମାଛ ଖେଳୁଛନ୍ତି କେତେ କେଜାଣି ।
ଆହାର ଦେଖି
ଗଲେ ଅଟକି,
ଗୋଟାଏ ଗୋଡ଼କୁ ପେଟରେ ଜାକି
ଏକଲପ୍ୟେ ଦୁହେଁ ରହିଲେ ଟାକି ।
ଗଡ଼ଣା ଜାଆଁଳ, ଆଃ କି ମିଠା !
ପେଟକୁ ଗୁଳିଲ ଗୋଟାକୁ ଗୋଟା ।

କାଇଁଚ ଝୁଡ଼,
ପାଣିରେ ବୁଡ଼,
ମଥାରୁ ଖସିଲା ବେଣା ପଗଡ଼ି ।
ଝିଅ ବାହାଘର ସଉଦା କଣା,
ଘରକରଣା
ନ ଗଲା ଜଣା,
ମାଛନଣା କଲା ଦୁହିଁଙ୍କୁ ବଣା ।
ଲୁଣିଆ ଚରଣ୍ଟ ଖୋଷେଇ ଭୂଲି
ସେଇଠି ରହିଲେ ବଗବଗୁଲି ।

## ଦୁଷ୍ଟ ଓ ଶିଷ୍ଟ

ଦୁଷ୍ଟ—
ମୁଁ ଗୋଟିଏ ଦୁଷ୍ଟ ପିଲା ଠାପୁଆଙ୍କର ଗୁରୁ
ଗୁଣ୍ଡି ଶମୂଷା ନେଉଳ ଦେଖି ଗୋଡ଼ାଏ ତାଙ୍କୁ ଦୁରୁ ।
ପାଣିରେ ବୁଡ଼େ କଇଁଛ ପରି ଗୋଳିଆ କରେ ପାଣି,
ଶରଧା ମୋତେ କରନ୍ତି ନାହିଁ କେହି ମୋ ଗୁଣ ଜାଣି ।
ଶିଷ୍ଟ—
ମୋତେ କହନ୍ତି ଶାନ୍ତ ପିଲା, ବଚନ ମୋର ଧୀର,
କାମ ପଡ଼ିଲେ ବାହାର ପଡ଼େ ଆଗୁଆ ହୋଇ ବୀର ।
ପାଣିରେ ବେଶି ବୁଡ଼ଇ ନାହିଁ ମାରଇ ନାହିଁ ପକ୍ଷୀ,
ସମସ୍ତେ ମୋତେ ସୁଖ ପାଆନ୍ତି ଗୁଣ ମୋହର ଦେଖି ।
ଦୁଷ୍ଟ—
ପଢ଼ା ନ କରି ଖେଳଇ ମୁହିଁ ମନମଉଜେ ନିତି,
ଉଡ଼ାଇ ଗୁଡ଼ି, ଡାଳମାଙ୍କୁଡ଼ି, ବାଗୁଡ଼ି କତିକତି ।
ଚାଟଶାଳୀରେ ଚରଇ ବହି ଖାଏ ମୁଁ ବେତ ମାଡ଼,
ପଢ଼ଣାଘରୁ କରଇ ଚୋରି ଡେଇଁ ପାଚେରି ବାଡ଼ ।

ଶିଷ୍ଟ—
ପଢ଼ାଟି ସାରି ଖେଳଇ ମୁହିଁ ଗୁରୁଙ୍କ କଥା ମାନି,
ଲୋଭରେ ପଡ଼ି କାହାରି କିଛି କରେ ନାହିଁ ମୁଁ ହାନି ।
ପରଦରବ ପାଇଲେ ତାକୁ ଫେରାଇ ଦିଏ ଆଗ,
ଗୁରୁଜନଙ୍କ ଉପରେ କେବେ କରେ ନାହିଁ ମୁଁ ରାଗ ।

ଦୁଷ୍ଟ—
ଛୋଟାକୁ ମୁହିଁ ଖେଳଇ ହୁଏ ଅନ୍ଧକୁ ଦେଖି ହସେ,
ଗୁହାଳିବେଳ ହୋଇଲେ ଲୁଚି ବଣବୁଦାରେ ପଶେ ।
ଧୂଳିରେ ଲୋଟି ପଙ୍କ ଚକଟି ଲୁଗା କରଇ ମଳି,
ଭୁଚ୍ଛା କଥାରେ ନାରଦ ପରି ଲଗାଇଦିଏ କଳି ।

ଶିଷ୍ଟ—
ଦୋଷ କଲେ ମୁଁ ଲୁଚୁଏ ନାହିଁ କହଇ ସତ କଥା,
ପିତାମାତାଙ୍କ ଚରଣତଳେ ଲଗାଏ ନତ ମଥା ।
ସଫା ସୁତୁରା ରଖଇ ଦେହ, ଲୁଗା, ଗାମୁଛା, ବହି,
ଶୁଖିଲାଟାରେ ଲୋକ ଆଗରେ ଦେଖାଏ ନାହିଁ ଛଇ ।

ଦୁଷ୍ଟ ଶିଷ୍ଟ ଦୁଇଟି ଭାଇ ଦୁଷ୍ଟ ଭୋଗେ ଦୁଃଖ,
ଶିଷ୍ଟ ପାଏ ପୂଜା ଆଦର ଜୀବନେ ମହା ସୁଖ ।

## ଘାସ ଓ ବରଗଛ

କଅଁଳ ଘାସଟି ଉପରେ ଦେଖିଲା ଗୁହିଁ
ଅଧେ ଆକାଶକୁ ଡାଳପତରରେ ଛୁଇ
ବୁଢ଼ା ବରଗଛ ଆଖି ମଳି ମଳି
ଅଳସେ ମାରୁଛି ହାଇ ।

ଉରସି କହିଲା ଘାସ
ମୁହଁରେ ଫୁଟାଇ ହସ,
"ଉଠିଲ କି ଏବେ ଅଳସୁଆ ଅଜା ?
କଥା ହେବା ଟିକେ ଆସ ।"

ବରଗଛ ଯେବେ ଘାସର ଏ କଥା ଶୁଣି—
ଏତେ ସାହସ ଯେ ଭିଆରୁଛି ମତେ ପୁଣି !
କହିଲା, "ଘାସ ଲୋ, ଲାଜ ମାଡୁନାହିଁ ତତେ
କାଲିର ଛୁଆ ତୁ ଅଳସୁଆ କହୁ ମତେ ?
ଅତେଇ ଜନେ ମୁଁ ଯାଏ କି ତୋପରି ମରି ?
ଦେଢ଼ଶ ବରଷ ଉଭା ଅଛି ଏହିପରି ।
ତୋତେ ଖାଇ ସିନା ବାଛୁରି ପୂରାଏ କଳ,
ହଜାରେ ଆହାର ମୋର ଏ ଘଡର ଡାଳ ।
ମୁଁ ନୁହେଁ ତୋପରି ଅଲୋଡ଼ା, ନିକମା, ହୀନ,
ପବନ ସାଥିରେ ବଳ କଷେ ନିତିଦିନ ।
ଛାର ଘାସ ହୋଇ କହୁ ଏତେ ବଡ଼ କଥା,
ଗୋଟିଏ ଫଳରେ ଫଟାଇବି ତୋର ମଥା ।
ନେଳକୁଆ ଯାକୁ ପାଦତଳେ ଦଏ ଦଳି,
ସେ ପୁଣି କରୁଛି ବରଗଛ ସାଥେ କଳି !"
ଏତେ କହି ବୁଢ଼ା ବର
ରାଗେ ହୋଇ ଗରଗର
ଡାଳ ଦୋହଲାଇ ନାଲି ନାଲି ଫଳ
ଝାଡ଼ିଦେଲା ସାତ ଥର ।

ବରଫଳ ତଳେ ପଡ଼ି
ଏଣେ ତେଣେ ଗଲା ଗଡ଼ି,
ସଳଖି ଉଠିଲା ଘାସଗଛ ତାର
କଅଁଳ ଦେହଟି ଝାଡ଼ି ।

ବନସ୍ତେ କହିଲା, "ଶୁଣ ହେ ବଗଟ ବର,
ବୁଝି ପାରୁନ ମୁଁ ବଢ଼େଇ କାହିଁକ କର ।
ଏକା ଗଛ ଆମେ ବଡ଼ ସାନ ସିନା
ଗୋଟିଏ ତ ପରିବାର ।

ମଥାରେ ମୋହର ଫଳ ଯେତେ ଦେଲ ଝାଡ଼
ବିଲୁଆ ଖାଇଲେ ଖୁସିରେ ଘୁଡ଼ବେ ରଡ଼ ।
ବରଡାଳ ବିନା ହାଣ୍ଡି କି ମରିଛୁ କାହିଁ ?
ମୋତେ ନ ଖାଇଲେ କ୍ଷୀର ଦେବନାହିଁ ଗାଈ ।
ଏତେ ରୂପ ଧରି ଏତେ କାଳ ରହି ଠିଆ
ଯୋଗାଉଛ ଖାଲି ବଣପଶୁ-ଜଳଖିଆ ।
ହେଁ ପଛେ ମୁହିଁ କଅଁଳ ଗ୍ରେଟିଆ ଘାସ
ମଣିଷ-ଛୁଆଙ୍କୁ ଯୋଗାଏ ଜୀବନ-ରସ ।
ଝଡ଼ବେଳେ ଅଜା କି ହୁଏ ତୁମର ଦଶା,
ତୁମଭଳି କେବେ ହୁଏ କି ମୁଁ ଲୋକହସା ?
ଅଲୋଡ଼ା ବୋଲି ଏ ଦୁନିଆରେ କିଛି ନାହିଁ,
ଭଲ ଭଲ କାମ ରହିଛି ସବୁରି ପାଇଁ ।

କିଏ ବଡ଼ କିଏ ସାନ
ସବୁ ବିଧାତାର ଦାନ
ସେବାରେ ଲାଗିଲେ ଶ୍ରେଷ୍ଠ ଜୀବନ ବି
ହୋଇପାରେ ମହାସ୍ଥାନ ।"

# 'ବସି ଖାଇଲେ ନଈବାଲି ସରେ'

ଧନୀ ଘରେ ସୁଖେ ଜନମିଥିଲା ସେ
ଧନପତି ତାର ନାମ,
ବିଳାସରେ ବଢ଼ି ଯୁବକ ହେଲା ସେ
ଜାଣେ କଲା ନାହିଁ କାମ ।
ରାତି ଶେଷ ଯେବେ କେହି ତା ଦୁଆରେ
ଡାକନ୍ତିଏ ନାମ ଧରି,
ରାଗେ ଧନପତି ଗରଜ ବୋଲଇ—
"କିଏ ପକାଉଛି ହୁରି ?
ଏଡ଼େ ଚଇତରେ କି କାମ ଅଛି ରେ
ନିଦରେ ଦେଉଛୁ ବାଧା ?
ଅନ୍ଧାର ଯାଇନି, ଲାଗୁଅଛି ମୋତେ
ରାତି ହୋଇନାହିଁ ଅଧା ।"
ଏକଡ଼ ସେକଡ଼ ହୋଇ ଗଡ଼ପଡ଼
କାଟଇ ସକାଳ ବେଳା,
ଉଠେ ଆଖି ମଳି, ଦେହ ଲାଗେ ଘିଣି
ସବୁ କାମେ ହୁଏ ହେଳା ।
କେବେ ମୁଣ୍ଡ ପୋତି ବସଇ ଘରରେ
କେବେ ବା ଟହଲେ ଦଣ୍ଡେ,
ଭୂମିପରେ ବସି ଗାର କାଟୁଥାଏ
କେବେ ଧରି କାଠି ଖଣ୍ଡେ ।
ଅଡ଼େଇ ପହରେ ଗାଧୁଆ ସାରେ ସେ
ଭୋଜନ ଦୁଇଟାବେଳେ,
ଖାଇସାରି ଶୁଏ, କେବେ କେବେ ପୁଣି
ବସିଯାଏ ପଶାଖେଳେ ।

ଭୋଜନେ ଶୟନେ ବିଳାସ ବ୍ୟସନେ
ଦିନ ମାସ ବର୍ଷ ସାର
ଦେଖିଲି ସରିଛି ସକଳ ସମ୍ପଦ,
ଲୁଟିଛି ତା ସୁଖଶିରୀ ।
ଜଣ ମହାଜନ ପିଆଦା ପଠାଏ,
ସରକାର ମାଗେ କର,
କ୍ଷେତବାଡ଼ ହେଲା ପଡ଼ିଆ ଗୋଚର
ଭାଙ୍ଗିଗଲା କୋଠାଘର ।
ଗୋଟି ଗୋଟି ଛାଡ଼ି ଚାଲିଗଲେ ଯେତେ
ସୁଖ ଦିବସର ସାଥୀ,
ଭାତ ମୁଠେ ପାଇଁ ଘୂରି ବୁଲଲା ସେ
ବାର ଘରେ ହାତ ପାତି ।
ଘରେ ଖାଉଥିଲା ଯିଏ ମନ୍ତ୍ର ସାର
ହାତେ ତାର ଭିକ୍ଷାଥାଳ,
ବସି ଖାଉଥିଲେ ନଈବାଲି ସରେ
କଥା ଅଛି କାଳ କାଳ ।

## କାହିଁକି ?

ବାବୁଲି ପଢ଼େ ଆମ ସାଥିରେ, କହ ମାଆ !
କେଉଁଠୁ ଆଣେ ଏତେ ପୋଷାକ ନୂଆ ନୂଆ ?
ବଢ଼ିଆ ଜୋତା ମୋଜା କାମିଜ ଭଲି ଭଲି,
କଲମ ତକ ତକ ସୁନାରୁ ଦିଶେ ବଳି ।
ଫୁଟିଛି କଣ୍ଟା ମୋର ଏଇ ଯେ ପାଦତଳେ
ସ୍ତ୍ରେଟଇ ଶୂଳୁଅଛି ନ ଦେଉ ଜୋତା ହଳେ ।
ପୁରୁଣା ଜାମା ମୋର ହେଲାଣି ପାଉଶିଆଁ
ଖଣ୍ଡିଏ ନୂଆ କିଣି ଦେଉନୁ ମତେ କିଆଁ ?

ବାବୁଲା ରହେ ଯେଉଁ ଦୋତାଲା କୋଠାଘରେ
ଫୁଟଇ କେତେ ଫୁଲ ତା ଆଗ ବଗିଚାରେ !

ମଟର ଗାଡ଼ି ଚଢ଼ି ଭଉଣୀ ମାଆ ସାଥେ
ନିତି ସେ ବୁଲଯାଏ ମଜାରେ କେଡ଼େ ସତେ !

ଆମର କିଆଁ ମାଆ ଖଣ୍ଡିଆ ଚାଳଘର,
ବରଷା ହେଲେ ପାଣି ଗଳଇ ଝର ଝର ?

ଯାଆନ୍ତି ମଶା ଚରି, ହୁଏନି ଭଲ ନିଦ,
ଖରାରେ ଚାଲି ଚାଲି ଫୋଟକା ହୁଏ ପାଦ ।

ଖାଇବା କଥା ତାର ଶୁଣିଛୁ କେବେ ମାଆ ?
ପରଟା ରସଗୋଲା ନିତି ତା ଜଳଖିଆ ।

ମାଉଁସ ଦୁଧ ମାଛ ଖେଚେଡ଼ି ସରୁ ଭାତ,
ତା ସାଙ୍ଗେ ଡାଲି ଭଜା ତିଅଣ ପାଞ୍ଚ ସାତ ।

ଆମକୁ କାହିଁକି ମା ସେ ସବୁ ମିଳେ ନାହିଁ ?
ଯାଉଛୁ ଆମ ଦିନ ପଖାଳ ଶାଗ ଖାଇ ।

କେତେ ତ ରସଗୋଲା ରହିଛି ଦୋକାନରେ,
ଗୋଟିଏ ହେଲେ ମତେ ଦେଇଛୁ କେବେ ଥରେ ?

ଟୋପାଏ ତେଲ ଆମ ମୁଣ୍ଡରେ ବାଜେ ନାହିଁ,
ସାବୁନ ଖଞ୍ଜା ତାଙ୍କ କୁକୁରଛୁଆ ପାଇଁ ।

କଣ୍ଢେଇ କିଣିବାକୁ କରିଛି ଯେତେ ଅଳି
ତୋଠାରୁ ସବୁଥର ଖାଇଛି ମାଡ଼ଗାଳି ।

ଖେଳନା ନୂଆ ନୂଆ, ଭଲକି ଭଲ ବାଜା,
କେଉଁଠୁ ପାଉଛି ସେ କରୁଛି ଏତେ ମଜା ?

ବାବୁଲ ସାଥେ ମୁଁ ଯେ ପଢ଼ୁଛୁ ଏକା ପାଠ,
ଦୁହେଁ ତ ସାନ ପିଲା, ଦୁହେଁ ତ ଏକା ଘାଟ ;

କହ ମା ତେବେ ଆମେ କେଉଁଠି ବଡ଼ ସାନ,
କାହିଁକି ପୁଣି ଏତେ ରହିଛୁ ଅସମାନ ?

## ଟିକି ତାରା

ଟିକି ତାରା ମିଟିମିଟି ଆଖି ଠାରୁ ମତେ କି ?
କଥା ପଦେ କହିବାକୁ ମନକରୁ ଯତେ କି ?
ସରଗର ତାରା ତୁ ଯେ ମୁଁ ତ ନୁହେଁ ତୋପରି,
ଏତେ ଦୂରୁ ମୋ ସାଥିରେ କଥା ହେବୁ କପରି ?
ଦିନବେଳେ ଟିକି ତାରା କାହିଁ ଲୁଚି ରହୁ ତୁ ?
ରାତି ହେଲେ ମତେ କଅାଁ ଜୁଳୁଜୁଳୁ ଚାହୁଁ ତୁ ?

ଶୁଣିଛୁ ରକେଟ୍ ଉଠିଯାଏ ଆଖି ପଲକେ,
ମଣିଷକୁ ନେଇଯାଏ ଗ୍ରହତାରା ମୁଲକେ ।
ସେଇଥିରେ ଉଡ଼ିଯିବ ଟିକି ତାରା ତୋ ପାଶେ,
ବୁଲାଇବୁ ମତେ ତୋର ଝିଲମିଲ ଆକାଶେ ।
ସାଥି ହୋଇ ସରଗରୁ ଆସିବା ଏ ଧରାକୁ,
କାବା ହେବେ ଲୋକେ ଦେଖି ମୋର ଟିକି ତାରାକୁ ।
ଖେଳ ବୁଲ ଏଇଠାରେ ସବୁ ଦିନେ ରହିବୁ,
ସରଗ ରାଇଜ କଥା ଆମ ଆଗେ କହିବୁ ।




## ବଡ଼ ସାନ

ଲୁନା ମୁନା ଦୁହେଁ ସ୍କୁଲ ସ୍କୁଲ ଯାଉଁ
ଶୁଣିଲେ ସବାର ଡାକ,
ଅନାଇଁ ଦେଖିଲେ ସବାରରେ ବସି
ଯାଏ ଜଣେ ଧନୀ ଲୋକ ।
ଲୁନା କହେ, "କେଡ଼େ ମଉଜରେ ଦେଖ
ବସିଛି ଲୋକଟା ଭାଇ,
ଆମେ ହତଭାଗା ସ୍କୁଲକୁଁ ଖରାରେ
ଚାଲିଛୁ ଯେ ଏମିତି ଏଇ !"
ମୁନା କହେ, "ଭାଇ, ତଳକୁ ଅନାଇ
ଦେଖ ସେ ବାହକଗଣେ,
କିଏ ହତଭାଗା, କିଏ କପାଳିଆ,
ଭାବ ଦେଖ ମନେ ମନେ ।
ସାନ ବଡ଼ ଭାବ ମନର ଭିଆଣ
ସନ୍ତୋଷ ସୁଖର ମୂଳ,
ବଡ଼ ସାଙ୍ଗେ ଯିଏ ଭୁଲିଲ ନିଜକୁ
ସାନ ସଙ୍ଗେ ଥରେ ଭୁଲ ।"

# ବୋକା କିଏ ?

ରାସ୍ତା ଦୁଇଧାରେ ରହିଛି ଭଲ ଭଲକା ଗଛ,
ସଜାଇ କେ ଅବା ଲଗାଇ ଅଛି ପଛକୁ ପଛ ।
ବଇଶାଖ ମାସ, ବାଟୋଇ ଖରା ନ ପାରି ସହି
ଗଛମୂଳେ ଥକା ମାରିଲା ଦେଖି ଶୀତଳ ଛାଇ ।
ଦେଖିଲା କଇଥ ଗଛରେ ଫଳ ରହିଛି ଭରି,
ଭାବୁରେ, "ଏଥିରୁ ଆଜ ମୁଁ କଛି କରିବ ଚୋରି ।
କେହି ତ ନାହାନ୍ତି ଏଠାରେ ଅଛି ମୁଁ ଏକୁଟିଆ"—
ଏହା ଭାବି ଗଛମୂଳରେ ଯାଇ ହୋଇଲା ଠିଆ ।
ଅନାଇ କହଇ, "ଗଛଟା କେଡ଼େ ହୋଇଛି ମୋଟ,
ଫଳଗୁଡ଼ା ତାର ହୋଇଛି କଆଁ ଏପରି ଛୋଟ ?
କଖାରୁ ଲଟିରେ ଧରୁଛି କେଡ଼େ ଆକାର ଫଳ,
କଇଥ ଗଛର ନାହିଁ କ ଅବା ସେତକ ବଳ !
ଫଳ ଗଢ଼ିଥାନ୍ତା ବିଧାତା ସିନା ଗଛକୁ ଚାହିଁ,
ଏଡ଼େ ବୋକା ସିନା ଈଶ୍ୱର ବୁଦ୍ଧି ଟିକଏ ନାହିଁ !"

ଏତିକ ବେଳକୁ ପବନ କାହୁଁ ଆସିଲା ମାଡ଼ି,
ଦୋହଲଇ ଡାଳ ଗଛରୁ ଦେଲା ପତର ଝାଡ଼ି ।
ବାଟୋଇ ମୁଣ୍ଡରେ ପଡ଼ିଲା ଝଡ଼ି କଇଥଟାଏ
"ମାଆଲେ" ବୋଲି ସେ ବିଚରା ମୁଣ୍ଡ ଆଉଁସି କହେ—
"ହୋଇଥାଆନ୍ତା ଏ କଇଥ ଯଦି କଖାରୁପରି
ନିଶ୍ଚୟ ଆଜ ମୁଁ ଏଇଠି ଯାଇଥାଆନ୍ତି ମରି ।
ଏଡ଼େ ଦୁନିଆଁ କୁ ଗଢ଼ିଛି ଯେଉଁ ଜଗତସାଇଁ,
ତାକୁ ବୁଝିବାକୁ ଛାର ମୁଁ— ମୋର କେତେ କାହିଁ ?"

# ଠକ ବଗ

ବଗଟାଏ ଦିନେ ମାଛଙ୍କୁ ଶୁଣାଇ
କହଇ ମଧୁର କଥା,
"ଏଭଳି ବିପତ୍ତି ଘୋଟିବ ତୁମକୁ
ଶୁଣି ଘୂରିଯାଏ ମଥା ।

କେଉଟ ଆସିବେ ଆଉ ସାତ ଦିନେ
ପକାଇବେ ବଡ଼ ଜାଲ,
ପାଖେ ନଦୀ ଥାଉଁ ମରିଯିବ ଆହା !
ହୋଇ କେତେ କଲବଲ !

ବୁଢ଼ା ବେଙ୍ଗ ଶୁଣି କହେ ଆଖି ଠାରି
"ବଡ କପଟୀ ଏ ବକ,
ମାଛ ଧରିବାକୁ ବଳ ହଟିବାରୁ
ଭୁଲାଏ ଆମକୁ ଠକ ।"

କେହି ନ ଶୁଣିଲେ ବୁଢ଼ା ବେଙ୍ଗ କଥା
ଧାଇଁଲେ ପୋଖରୀକୂଳେ,
ବଗକୁ କହିଲେ, "ତୁହି ଏକା ମାମୁ
ସାହା ଏ ବିପତ୍ତିକାଳେ ।"

ବିନାଶ କାଳରେ ବିପରୀତ ବୁଦ୍ଧି
କାଳେ କାଳେ ଅଛି ଜଣା,
ବଗ ବୋଲେ, "ଆରେ ଭଣଜାଏ, ତୁମେ
କାହିଁକି ହେଉଛ ବଣା ?

ଗୋଟି ଗୋଟି କରି    ଧରି ନେଇ ଧୀରେ
ଗୁଡ଼ଦେବ ନଈଜଳେ,
ମହା ସୁଖେ ତହିଁ    ଖେଳିବ ବୁଲିବ
ଦିନରାତି ସବୁବେଳେ ।"

ଉଜଗଲେ ମାଛ    ବଗ କଥା ଶୁଣି
ଗୁଏଁ ଆସି ଦେଲେ ଧରା,
ମୁଖେ ଧରି ମାଛ    ଉଡ଼ିଯାଏ ବଗ
ନ ମାନି ବରଷା ଖରା ।

ପୋଖରୀ ସେ ପଟେ    ବେଣାବୁଦା ତଳେ
ଜଳଖିଆ କରି ବୁଢ଼ା
ଲେଉଟି ଆକାଶୁଁ    ଉଡ଼ିଆସି ପୁଣି
ବସଇ ପୋଖରୀହୁଡ଼ା ।

ଶେଉଳ କହଇ,    "ମୋତେ ନିଅ ମାମୁ",
ରଡା କହେ, "ମୁହିଁ ଯିବ",
ଶିତଳ କହଇ    ପାଣି ଦୋହଲାଇ
"ମୁଁ କିଆଁ ପଛକୁ ଥିବ ?"

ବୁଢ଼ା କଙ୍କଡ଼ାଟା    ମାଛଙ୍କୁ ଡରାଏ
"ମୋତେ ଦିଅ ବାଟ ଗୁଡ଼ ।"
ବଗ ଠକ ଏଣେ    ମନେ ମନେ ହସି
ବସିଥାଏ ମୁହଁ ମାଡ଼ି ।

କଙ୍କଡ଼ା ବୋଇଲା,    "ମାମୁ ହେ, ମୋହର
ଗୋଡ଼ ଅଛି ବଡ଼ ଟାଣ,
ବେକରେ ତୁମରି    ଦୋଳି ଖେଳି ଖେଳି
ଯିବାକୁ ହେଉଛି ମନ ।"

ବଗ ନ ବୁଝିଲା                    କଉଶଳ ତାର
ଝୁଲାଇ ତାହାକୁ ଗଲେ
ଉଡ଼ ଉଡ଼ ଶେଷେ                    ବସିଲା ଯାଇ ସେ
ସେହି ବେଣାବୁଦା ତଳେ ।

ବୋଇଲା, "ଭଣଜା,                    ଛାଡ଼ ଦେ ମୋ ଗଳା
ସେତିକ ଥାଉ ତୋ ଖେଳ,
ସେମାନଙ୍କୁ ପୁଣି                    ଆଣିବାକୁ ଯିବ
ଉଚ୍ଛୁର ହେଉଛି ବେଳ ।"

ଛଳେ ମାଛ କଣ୍ଟା                    ଦେଖି ସେ କଙ୍କଡ଼ା
ବୁଝିନେଲା ସବୁ ଖଟରେ,
ଦୁଇ ଗଡ଼ କାଟି                    ଠକ ମାମୁ ଗଳା
ହରଷେ ଫେରିଲା ଘରେ ।

## ସାରଥିର ଜନ୍ମଦିନ

ଦୁଃଖୀ ଘରେ ତା'ର ଜନମ ତାର ନାମ ସାରଥି
ବାପ ମାଆଙ୍କର ଗୋଟିଏ ବୋଲ ଶରଧା ଅତି ।
ସାରଥିକୁ ଦିନେ ବୋଲାଇଲେ ବାପା ପାଖକୁ ଡାକି,
"କାଲି ହେବ ତୋର ଜନମଦିନ ଜାଣିଛୁଟି କି ?
ନୂଆ ଲୁଗା, ନୂଆ ଖେଳନା ମୁଁ ବା ପାଇବି କାହିଁ ?
କୋରା, ଖଜା କିଣି ଦେବାକୁ ପାଖେ ପଇସା ନାହିଁ ।
ପିଠାପଣା ଯାହା ଅଳପ ମାଆ କରିବେ ଘରେ,
ଶ୍ବାଳୀରୁ ଛୁଟି ନେବାକୁ ମନ ହେଉଛି କରେ ?"

ସାରଥି ବୋଇଲା, "ବାପା ହେ ! ଖାଲି ଛୁଟି କି ହେବ,
ମନଇଚ୍ଛା ମୋତେ କାଲିକ ଯେବେ ଗୁଡ଼ ନ ଦେବ ?
ଯାହା ମୋର ଖୁସି କରିବ କାଲି ଦିନଟା ପାଇଁ,
ସବୁ ଦିନ ପରି ଆକଟ ମୋତେ କରିବ ନାହିଁ ।"

ଆଜ ସାରଥିର ଜନମଦିନ ସ୍କୁଲ ଛୁଟି,
ନଈକୂଳ ଆଡ଼େ ଧାଇଁଲା ସାର ସକାଳୁ ଉଠି ।
ନଈକୂଳ ଜାମୁ ଗଛରେ ଚଢ଼ି ଖାଇଲା କୋଳି,
କୋଳି ଖାଇସାରି ଡାଳରେ ଯାଇ ଖେଳିଲା ଦୋଳି ।
ଦୋଳି ଖେଳୁ ଖେଳୁ ଭାଙ୍ଗିଲା ଡାଳ ପଡ଼ିଲା ତଳେ,
ଝାଡ଼ିଝୁଡ଼ି ହୋଇ ଉଠି ସେ ପୁଣି ମନରେ ଭାଳେ—
"ଏ ଯେଉଁ କୁକୁର ଆସୁଛି ତାକୁ ମାରିବି ଢେଲା,"
ତାକୁ ଜଣାନାହିଁ କାମୁଡ଼ା, ସେଟା ବଡ଼ ତରକା ।
ମାଇଲା ବୋଲୁଅ, କୁକୁର ରାଗେ ଆସିଲା ଧାଇଁ,
ସାରଥି ଗୋଡ଼କୁ କାମୁଡ଼ ଦେଇ ଗଲା ପଳାଇ ।
ବହୁ କଷ୍ଟେ ଉଠି ସାରଥି ଗୃହେ ସଡ଼କ ତଳେ,
ଦେଖିଲା ଛୁଆଟି ପଶିଛି ବଣବୁଦା ଗହଳେ ।
ଧରିବାକୁ ତାକୁ ଧାଇଁଲା ସାର ପାଗଳ ପରି,
ବେତକାସି ଲାଗି ଗାମୁଛାଖଣ୍ଡ ଗଲା ଯେ ଚିରି ।
ତହୁଁ ସେ ମନରେ ବିଚାରେ, "ଏବେ ପାଇଲି ଦଗା,
ଖାଇଲି କଚଡ଼ା, କାମୁଡ଼ା, ଚିରିଗଲା ମୋ ଲୁଗା ।
ଜାଣିଲି ଏବେ ମୁଁ କାହିଁକି ପିତାମାତା ଯେ ମୋର
ଶାସନ କରନ୍ତି, ମୋଠାରେ ହୋଇ ଏଡ଼େ କଠୋର ।
ପିତା, ମାତା, ଗୁରୁ କହନ୍ତି ଅବା କରନ୍ତି ଯାହା,
ପିଲାଙ୍କ ମଙ୍ଗଳ ପାଇଁକି ନିଶ୍ଚେ ଜାଣିଲି ଏହା ।
ଆଉ ନ ହେଳିବି ଏଣିକି ଗୁରୁଜନ ବଚନ,
ହେଳିଲେ ନିଶ୍ଚେ ମୁଁ ଭୋଗିବି ପଦେ ପଦେ କଷଣ ।"

# ଅନ୍ଧଙ୍କର ହାତୀଦେଖା

ଅନ୍ଧ ଛଅଜଣ ହାତୀ ଦେଖିବାକୁ
ବାହାରିଲେ ହୋଇ ସାଥୀ,
ଗୋଟିଏ ନୟନ ନାହିଁ ତ କାହାରି
କେମନ୍ତେ ଦେଖିବେ ହାତୀ ?
ହାତ ମାରି ମାରି ଦେଖିବା ଶୁଣିଲୁ ହେ
ହାତୀର କେମନ୍ତ ଶୋଭା,
ବନ୍ଧୁରି ଏସନ ଅନ୍ଧ ଛଅଜଣ
ହାତୀପାଶେ ହେଲେ ଉଭା ।
ପହିଲେ ଦେଖିଲା ବୁଢ଼ା ଅନ୍ଧ; ହାତୀ—
ପେଟରେ ବୁଲାଇ କର
ଦେଖିଆସି କହେ, "କାନ୍ଥପରି ହାତୀ
ବୁଝିଲି ମୁଁ ଏଇଥର ।"
ଆଉ ଜଣେ ଖାଲି ଦାନ୍ତ ଦୁଇଟିରେ
ସାତ ଥର ହାତ ମାରି
"ଖଣ୍ଡାଖୋଳ ପରି ହାତୀର ଦେହଟା"
କହେ ଆସି ଦେଖି ସାରି ।
ତୃତୀୟ ଆସିଲା ଧଡ଼ପଡ଼ ହୋଇ
ଧଇଲା ହାତୀର ଗୋଡ଼,
"ଖୁଣ୍ଟପରି ହାତୀ" କହି ସେ ବୁଢ଼ାଟା
ସଭିଙ୍କୁ ଦେଖାଏ ଢୋଡ଼ ।
ଆଉ ଜଣେ ଆସି କାନଟାକୁ ଧରି
ଉଠାଇ ଉପର ତଳ,
ହେଜ ହେଜ କହେ, "ହାତୀଟା ଦେଖିଲି
କୁଲାପରି ଅବିକଳ ।"

ପଞ୍ଚମ କହଇ ଆଗେ ଠିଆ ହୋଇ
ଥୋଡ଼ପାହାରକୁ ଧରି,
"ମିଛ କଥା କହି ଭୁଲଉଛ ମୋତେ
ହାତିଟା ତ ସାପପରି ।"

ପଛଆଡ଼େ ଥିଲା ଟୋକା ଅନ୍ଧ ଜଣେ
କହେ ହାତିଲାଞ୍ଜ ଟାଣି,
"ଦଉଡ଼ି ଭଳିଆ ହାତୀ ଆଜଯାଏ
ନ ଥିଲି ଏ କଥା ଜାଣି ।"

କାହା କଥା କାହା ମନକୁ ନ ଆସେ
ଯେଝା କଥା ଯାକୁ ଭଲ,
ଗୋଟାଏ ହାତୀକୁ ଛଅଭଳି କରି
ଫେରିଗଲେ ଅନ୍ଧଦଳ ।

## କଳି ଛୁଟିଲା

ହଳକାମ ସାରି ସକାଳେ ବୁଢ଼ା ପଧାନ ଥରେ
ବଳଦ ହଳକ ଖଳାରେ ଛାଡ଼ି ଗଲା ତା ଘରେ ।
ପଘା ଦୁଇଟିକୁ ଗ୍ରେଟେଇ ଦେଲା ପକାଇ ଫାଶ,
ତାପରେ ଯାହା କ ଘଟିଲା ଶୁଣି ମାଡ଼ିବ ହସ ।
କୁଟା ରଖିଥିଲା ପଧାନ ଗଦା ଦୁଇଟା ମାରି,
ତାକୁ ଖାଇବାକୁ ବଳଦ— ଦୁହେଁ ହେଲେ ଉଟାରି ।
ସହଜେ ତ ପଘା ଗ୍ରେଟିଆ ଠେଣୁ ପାଇଲେ ନାହିଁ,
ଦୁହେଁ ଦୁଇଦିଗେ ଭିଡ଼ିଲେ · କୁଟା ଖାଇବା ପାଇଁ ।
ଦୁହିଁଙ୍କର ବଳ ସମାନ ଏକ ଆରକୁ ଭିଡ଼େ,
କିଏ ବା ଆଗ ଯେ ଖାଇବ, କିଏ କାହାକୁ ଛାଡ଼େ ?

ଏହିପରି ଭଡ଼ ଓଟାରି    କଲୁ ନୋହିଲା ଫଳ,
କିଏ କୁଟା ଖାଇ ନ ହେଲା,    ଶେଷେ ଥକିଲା ବଳ ।
ଦୂରେ ଗୁହାଁ ଦୁହେଁ ଦେଖିଲେ    ଆଉ ବଳଦ ହଳେ
ମିଳମିଶି କୁଟା ଖାଆନ୍ତି    ଏକା ଗଦାରୁ ହେଳେ ।
ତା ଦେଖି ପଶିଲା ଚେତନା    ଦୁଇ ବଳଦ ମନେ
ଜଣେ କହେ ତାର ସାଥିକି, "ଭାଇ, କି ବୋକା ଆମେ !
ବୃଥା ବଳ ସାରି କାହିଁକି    ଏଠି ହେଉଛୁ ଟାଣି,
ଗୋଟିଏ ଗଦାରୁ ଖାଇଲେ    କିବା ହୁଅନ୍ତା ହାନି ?"
ତାହା ଶୁଣି କହେ ଆରକ,    "ସତ କହିଲୁ ସାଥୀ,
ତୋହରି ଗଦାରୁ ଖାଇବା,    ମୋର ନାହିଁ ଆପତ୍ତି ।"
ଏହା କହି ଦୁଇ ବଳଦ    ଏକା ପାଖକୁ ଆସି
ପେଟ ଭରି କୁଟା ଖାଇଲେ    ମନ ଆନନ୍ଦେ ମିଶି ।

## ଗହଣା

ଧନୀ ଘରଣୀ ସେ ତାକୁରୁ ତଳପା
ସୁନାରେ ଦେଇଛୁ ଭରି,
ଦେଖାଇ ବୁଲୁଛି ଝଲମଲ ତାର
ଶାଢ଼ୀର ରେଶମୀ ଜରି ।
ପଡ଼ୋଶୀରେ ଡାକ କହେ ସେ ଫୁଲେଇ
"ଆସ ଗୋ ଭଉଣୀ ଦେଖ,
ସାତ ଭରିର ଏ ନୂଆ ଗୁପସରି
କଉଳ ମାନୁଛି ବେକ ?
ପଥର-ବସା ଏ କାନର ଝୁମୁକା
ନୂଆ ଫେସନର ରୁଲ,
ନିଜେ ବାବୁ କାଲି କିଣି ଦେଇଛନ୍ତି
ସହରି ଦୋକାନ ବୁଲି ।

ସୁନା ଗହଣାରେ ଏତେ ମୋ ଶରଧା
ହାତରେ କାହିଁ ବା ଧନ ?
ଦୋକାନଝାପାକ ସଂଗେ ଲୋ ଭଉଣୀ
କିଣିବାକୁ ହୁଏ ମନ ।
ଆଜ ଷୋଳ ଭରି ଗଜ ଅଛି ମୋର
ରଖି ଆସିଅଛି ଘରେ,
ଗହଣା ତୁମର କେଉଁଠି ରଖିଛ
ଦେଖାଇବ କି ଗୋ ଥରେ ?"
ପଡ଼ୋଶୀ ଘରଣୀ ସବୁ ଶୁଣି ଶୁଣି
ଉଠିଲେ ନ କରି ଡେରି,
ଦୁଇ ହାତେ ଧରି ଦୁଇ ପୁଅ ପୁଣି
ତୁରତେ ଆସିଲେ ଫେରି ।
"ଏଇ ମୋ ଗହଣା, ଏଇ ମୋର ସୁନା",
ଦେଖାଇ କହିଲେ ହସି,
ଧନିକ ଘରଣୀ ଲଜେ ହୋଇ ତୁନି
ଉଠି ପଳାଇଲେ ଖସି ।

## ଧର୍ମପଦ

ବାର ବରଷର ବଢ଼େଇ ପିଲା ସେ
ଧର୍ମପଦ ତାର ଶରଧା ନାମ,
ପିଲାଦିନୁ ଘରେ ପୋଥି ପଢ଼ି ନଜେ
ଶିଖିଅଛି ସବୁ ବଢ଼େଇ କାମ ।
ଦିନେ ସେ ଧରମୁ ପଚାରିଲା, "ମାଆ !
ବାପା ମୋର କାଏ ଅଛନ୍ତ କାହିଁ ?"
ମାଆ କହେ, "ତୋର ବାପା ଯାଇଛି ଯେ
ବାର ବର୍ଷ ହେଲା ବାହୁଡ଼ ନାହିଁ ।

ଚନ୍ଦ୍ରଭାଗା କୂଳେ ରାଜାଙ୍କ ଆଦେଶେ
କୋଣାର୍କ ଦେଉଳ ହେଉଛି ତୋଳା,
ସେହିଠାରେ ବାପା ରହିଛନ୍ତି ତୋର
କାରିଗରଙ୍କର ଲାଗିଛି ମେଳା ।"

ଧରମୁ ବୋଲେ, "ମୁଁ ଯିବ ଚନ୍ଦ୍ରଭାଗା",
"କେମନ୍ତେ ଯିବୁ ରେ ?" ପୁଚ୍ଛନ୍ତି ମାଆ,
"ବାଟ ପଚାରି ମୁଁ ଚାଲିଯିବି ମା' ଗୋ
ଭାବନା ନ କର, ଠାକୁରେ ସାହା ।"

ପୁଅ କଥା ଶୁଣି ମାଆ ବୋଲେ ଶେଷେ
"ଜନମରୁ ବାପ ଦେଖିନ ତୋତେ,
କେମନ୍ତେ ଚିହ୍ନିବେ ପୁଅ ବୋଲି ଯଦି
ସନ୍ତକ କିଛି ତୁ ନ ନେବୁ ହାତେ ?"

ଏହା କହି ମାଆ ଉଲ ବରକୋଳି
ପୁଅ ହାତେ ଦେଲେ ବାଡ଼ରୁ ତୋଳି,
ଧରମୁ ଆନନ୍ଦେ ଗଲା କୋଣାରକ
ଶୋକେ ମାଆ କାନ୍ଦି ହୁଅନ୍ତି ଭୋଳ ।

ଚନ୍ଦ୍ରଭାଗା କୂଳେ ଲାଗିଛି ଗହଳ
ବିରାଟ ଦେଉଳ ହେଉଛି ତୋଳା,
ବାରଶ ବଢ଼େଇ କରୁଛନ୍ତି କାମ
ଲାଗିଛନ୍ତି ଲୋକ ମେଳାକୁ ମେଳା ।

ଠକ ଠକ ଠକ ଶୁଭୁଛି ଶବଦ
ହେଲେ ଅଧେ ନୁହେଁ, ବାର ବରଷ,
ସବୁ ସରିଲାଣି ମୁଣ୍ଡି ମରୁନାହିଁ,
କାରିଗରଙ୍କର ମନ ବିରସ ।

ରାଜା କହୁଛନ୍ତି, "କାଲି ଯୁଦ୍ଧ ଶେଷ
ହୋଇ ନ ଥିବ ଏ ଦେଉଳ କାମ,
ବାରଶ ବଢ଼େଇ ମୁଣ୍ଡକାଟ ହେବ,
କାଲଠୁଁ ଲୁଚିବ ବଢ଼େଇ ନାମ ।"

ବିଶୁ ମହାରଣା ମନେ ହୁଏ ଭୀଳ,
ବାରଶ ବଢ଼େଇ ଭାଳନ୍ତି ବସି,
କି କଲେ ଦେଉଳ କଳସ ବସିବ
ରାଜା ନରସିଂହ ହୋଇବେ ଖୁସି ।

ଏମନ୍ତ ସମୟେ ଧର୍ମପଦ ଆସି
ବିଶୁ ପାଦତଳେ ଲଗାଇ ମଥା
କାନରୁ ଫିଟାଇ କୋଳକୁ ଦେଖାଇ
କହିଗଲା ଘରୁ ଆସିବା କଥା ।

ବିଶୁ ବୋଲେ, "ପୁଅ, ଦେଖିଥାଏଁ ତୋତେ
କାଲି ଆମେ ସବୁ ହୋଇବୁ ହଣା",
ସବୁ କଥା ଶୁଣି ଧର୍ମପଦ କହେ,
"ଏଥିପାଇଁ କିଆଁ ଏତେ ଭାବନା ?"

ନିଶବଦ ରାତି, ସମସ୍ତେ ଶୋଇଲେ
ଧରମୁଁ ଉଠିଲା ଦେଉଳଚୂଳେ,
ଏକା ରାତିକେ ସେ କଳସ ବସାଇ
ଦେଉଳୁଁ ଓହ୍ଲାଇ ଆସିଲା ତଳେ ।

ବଢ଼େଇ ମହଲେ ଘାଟିଲେଣି ପଡ଼ିଲା
ଏହା ଯେବେ ଜାଣିପାରିବେ ରାଜା,
ବୋଲିବେ, "କି କରୁ— ଥିଲ ଆଜଯାଏ ?
ଠକ ତୁମେ ସବୁ, ପାଇବ ସଜା ।"

ଶଶୁକୁ କହିଲେ, "ପୁଅରେ ଦାୟୀ ନା
ବାରଣ ବଢ଼େଇକୁଳରେ ଦାୟୀ ?"
ଶଶୁ କହେ କଷ୍ଟେ, "ପୁଅ ଯାଉ ପଛେ
ରହିଥାନ୍ତୁ ମୋର ବାରଣ ଭାଇ ।"

ଶୁଣି ଏ ବଚନ କାହାକୁ ନ କହି
ଧରମୁ ଉଠିଲା ଦେଉଳ ଚୂଳେ,
ବଢ଼େଇ କୁଳର ଟେକ ରଖିବାକୁ
ଝାସିଲା ଜୀବନ ସମୁଦ୍ର ଜଳେ ।

କୋଣାର୍କ ଦେଉଳ ଭାଙ୍ଗି ପଡ଼ିଲାଣି
ବାଲି ପଡ଼ିଆରେ ଗଲାଣି ମିଶି,
ଧର୍ମପଦ କଥା ଆଜଯାଏ ଲୋକେ
ମନେ ମନେ ହେଉଅଛନ୍ତି ଘୋଷି ।

## ସନାତନ

ସତୁର ବରଷ * ତଳେ ଓଡ଼ିଶାରେ
ଘୋଟିଥିଲା ଘୋର କାଳ,
ନଅଙ୍କ ଦୁର୍ଭିକ୍ଷ ପଡ଼ିଲା ଦେଶରେ
ଲୋକ ମଲେ ମାଳ ମାଳ ।

ପେଟ ଜଳନରେ ସିଝାଇ ଖାଇଲେ
ଭେଣ୍ଡୁଲ ପତର ଆଣି,
ସେ ମରମଫଟା କାହାଣୀ ଶୁଣିଲେ
ପଥର ହୋଇବ ପାଣି ।

ସନାତନ ନାମେ     ବାଳକଟିଏ ସେ
ଦୂର ଗାଆଁ ଗଣ୍ଡା ବୁଲି
ମାଆ ଭାଇ ପାଇଁ     ଭିକ ମାଗୁଥିଲା
କାନ୍ଧରେ ପକାଇ ଝୁଲି ।

ଘରେ ତାର ମାଆ     ସାନ ଭାଇଟିଏ
ବସିଥାନ୍ତି ତାକୁ ଚାହିଁ,
ଘର ଛାଡ଼ ବାପ     ଚାଲିଗଲା କେଣେ
ଆଉ ସେ ଫେରିଲା ନାହିଁ ।

ଦୁଇ ଦିନ କାଳ     ବୁଲି ବୁଲି ଶେଷେ
ସନାତନ ଗଛେ ବସି,
ମାଆ କଥା ଚିନ୍ତି     ନୟନରୁ ଲୁହ
ଧାର ଧାର ପଡ଼େ ଖସି ।

ଦେଖି ତା ବିକଳ     ଦୟାବନ୍ତୀ ଜଣେ
ଭାତ ଦୁଇ ଗିନା ଆଣି
କାନରେ ତାହାର     ତାଳି ଦେଇ ଧୀରେ
ଭାଷନ୍ତି ମଧୁର ବାଣୀ—

"ପଞ୍ଝରା ହାଡ଼ ତ     ଗଣିହୁଏ ତୋର
ଖାଇନାହୁଁ ପରା ଭାତ,
କାନ୍ଦିଲେ କି ହେବ     ଖାଇଦେ ମୁଠିକ
ଦମ୍ଭ ହେବ ଗୋଡ଼ ହାତ ।"

ସନାତନ ବୋଲେ,     "ଘରେ ମୋର ମାଆ
ବସିଥିବେ ମୋତେ ଚାହିଁ,
ଦୁଇ ଦିନ ହେଲା     ଆସିଲିଣି ଘରୁ
କାନ୍ଦୁଥିବ ସାନ ଭାଇ ।"

କାନରେ ପଡନେ ଗୁଡ଼ାଇ ଘଡଲୁ
ଉଠେ ସନାତନ ଧୀରେ,
ଭୋକ ଉପାସରେ ଟଳଇ ଶରୀର
ବାଧା ଲାଗେ ଶିରେ ଶିରେ ।
ମାଆ ଭାଇ ତାର ଅନାହାରେ ଥିବେ
କେମନ୍ତେ ଦେବ ସେ ଖାଇ ?
ବାଟ ଚାଲି ଚାଲି ଥକା ମାଇଲା ସେ
ଦେଖି ବରଗଛ ଛାଇ ।
ଘାତ ସେହିପରି କାନରେ ରହିଛି
ଶୋକେ ହୋଇ ଛଟପଟ
ସନାତନ ପ୍ରାଣ— ବାୟୁ ଉଡ଼ିଗଲା
ଛାଡ଼ି ଦେଇ ମାଟିଘଟ ।
ନଅଙ୍କ ଗଲାଣି, ଲୋକେ ମରୁଛନ୍ତି
ପ୍ରତିଦିନ ମାଳ ମାଳ,
ସନାତନ ନାମ ସୁନାଗାର ପରି
ରହିଅଛି ଏତେ କାଳ ।

* ରଚନାକାଳ—୧୯୩୬ ମସିହା

# ମହାନଦୀର ନାଉରୀ

ମହାନଦୀ ଗାଏ କୁଳୁ କୁଳୁ
ପବନ ବହଇ ଛାଡ଼ି ଛାଡ଼ି,
କୂଳ ବରଗଛୁ ଗୋଟି ଗୋଟି
ପାଣିଲା ପତର ପଡ଼େ ଝଡ଼ି ।





ଡାହାଣିଆ ଖରା ଯାଇନାହିଁ
ବେଳ ଉଚଉଚ, ନଗୁଟିଆ,
ମଧୂଆ ନାଉରୀ ଗୀତ ଗାଏ
ନାଆଟିରେ ବସି ଏକୁଟିଆ ।
ପବନ ବହୁଛି ସୁଲୁସୁଲୁ
ନାଆ ଦୋହଲୁଛି ଧୀରେ ଧୀରେ,
ସୁରଲହରୀ ତା ଖେଳଯାଏ
କି ମଧୂରେ ଆହା ନଦୀତୀରେ !
ରଜା ଯାଉଥିଲେ ସେହି ବାଟେ
ଅଟକଲେ ତାର ଗୀତ ଶୁଣି,
ମଧୂଆ କହିଲା କର ଯୋଡ଼ି,
"କି ଆଦେଶ ତବ ନରମଣି ?"
ବୋଲନ୍ତି ରାଜନ, "କି କାରଣେ
କହ ରେ ନାଉରୀ କହ ମୋତେ,
ଏଡ଼େ ସରାଗରେ ଗୀତ ଗାଉ
କାହିଁକି ତୋ ମନ ଖୁସି ଏତେ ?"
ହସ ହସ ମୁଖେ କହେ ମଧୂ,
"ଦୁଃଖ ଅଛି ମୋର କି ରାଜନ,
ଯାବତ ବାହୁରେ ଅଛି ବଳ
ଯାବତ ନାଆଟି ଅଛି ଟାଣ ?
ମହାନଦୀର ଏ ଢେଉମାଳା
ଆନନ୍ଦ ମୋ ମନେ ଢଏ ଭରି,
ମୋଟାଗୋଟା ଖାଇ ମନସୁଖେ
ଦିନ କାଟିନଏ କାତ ମାରି ।
ଧାଉନ କରଜ କାହାଠାରୁ
ଝୁରେ ନାହିଁ କାହା ଶିରୀ ଦେଖି,
ଭଗାରି କଏ ମୁଁ ଜାଣେ ନାହିଁ
ଡରେ ନାହିଁ ଦେଖି ନାଲ ଆଖି ।



ଲୋଭ କରେ ନାହିଁ, ମହାରାଜ !
ପରିଶ୍ରମ ମଣେ ମହା ସୁଖ,
ପ୍ରଭୁ ଦେଇଛନ୍ତି ପିଲାଟିଏ
କି ଅଛି ଜୀବନେ ମୋର ଦୁଃଖ ?"

ରାଜା ଶୁଣୁଥିଲେ ଏକ ଲୟେ
ମଧୁଆର ମନଖୋଲା କଥା,
କହିଲେ, "ନାଉରୀ ଭାଇ, ଆଜି
ନୁଆଇଁ ତୋ ପାଶେ ମୋର ମଥା ।

ମୁଁ ସିନା ରାଜା ଏ ରାଇଜର
ଗରିବ ନାଉରୀ ଜଣେ ତୁହି,
ନିର୍ମଳ ସୁଖର ମୂଳ ମନ୍ତ୍ର
ଶିଖାଇଛୁ ମୋତେ ଆଜି ଭାଇ ।

ଧନ କ୍ଷମତାର ଲୋଭେ ପଡ଼ି
ଘାରି ହୁଏ ସଦା ମୋର ମନ,
ସହସ୍ର ସଇନ ଥାଇ ମୋର
ଭୟ ଭାବନାରେ କଟେ ଦିନ ।

ତୁଚ୍ଛ ଅଟେ ମୋର ରାଜପଦ
ମୂଲିଆ ହୋଇ ତୁ ମହାସୁଖୀ,
ମୋର ଏ ମୁକୁଟ ନେଇ ଭାଇ
ଦାଆଟି ବଦଳ ଦେବୁ ତୁ କି ?

ସକଳ ସମ୍ପଦ ମୋ ରାଜ୍ୟର
ତୋର ନାଆ ସଙ୍ଗେ ନୁହେଁ ସରି,
ଧନ୍ୟ ହେଲି ଆଜି ତୋତେ ଭେଟି
ଧନ୍ୟ ଏହି ଦେଶ ତୋତେ ଧରି ।"

# ଛତା-ଜୋତାର ଜନ୍ମକଥା

ଜମଦଗ୍ନି    ନାମ ତାହାର    ପୁରାଣଯୁଗ ମୁନି
ଅଦ୍ଭୁତ ସେ    ଋଷିର କଥା    କହିବି ତୁମେ ଶୁଣି ।
ଦିନେ ଋଷିର    ଉଠିଲା ଖିଆଲ    ଧରିଲା ଧନୁଶର,
ଋଷିପତ୍ନୀ    ରେଣୁକା ଭୟେ    ହୁଅଇ ଥରହର ।
ଗୋଟାକ ପରେ    ଗୋଟାଏ ଶର ଯେଣିକି ଇଚ୍ଛା ତେଣେ
ମାରଇ ଋଷି,    ମନର ଖୁସି, ଅନାଏ ନାହିଁ କେଣେ ।
ମୁନିର ଆଜ    ଜବର ନିଶା    ଲକ୍ଷଭେଦ ଖେଳେ,
ତୂଣୀର ଦେଖି    ଶୂନ୍ୟ ଶେଷେ
            ରେଣୁକାକୁ ସେ ବୋଲେ—
"ଯାଅ ରେଣୁକା ଗୋଟାଇ ଆଣି
            ଶର ଦିଅ ମୋ ପାଶେ,"
ରେଣୁକା ଶର    ଥରକୁ ଥର ଗୋଟାଇ ନେଇ ଆସେ ।
ଏହିପରି ସେ    ଖିଆଲୀ ଋଷି    ଖେଳଇ ଧନୁଖେଳ,
ଜଣାନାହିଁ ସେ    ହେଲାଣି ଆସି    ଦୁଇ ପ୍ରହର ବେଳ ।
ଜ୍ୟେଷ୍ଠ ମାସ    ଭୀଷଣ ଖରା    ଋଷିର କିବା ଯାଏ ?
ରେଣୁକା ସିନା    ଶର ଗୋଟାଇ    ଦଉଡ଼ି ମରୁଥାଏ ।
ଶେଷେ ତାହାର    ଥକିଲା ବଳ    ଖରା ନ ପାରେ ସହି,
ବୃକ୍ଷତଳେ    ପଡ଼ିଲା ବସି    'ପାରିବି ନାହିଁ' କହି ।
କୁପିତେ ଋଷି    ବୋଲଇ ତାକୁ,
            "କି ହେଲା ଆଗୋ ତୋର ?"
ରେଣୁକା କହେ, "ସୂର୍ଯ୍ୟତାପେ ଜଳଇ ତନୁ ମୋର ।"
ପ୍ରିୟତମାର    କଷ୍ଟ ଦେଖି    ଋଷିର ହେଲା ଚେତା,
ସୂର୍ଯ୍ୟେ ରୁହିଁ    ବୋଲଇ ରୋଷେ
            "କିରେ ଆକାଶ-ନେତା !"

ତୋହର ଯୋଗୁଁ ରେଣୁକା ସିନା ଲଭଇ ଦୁଃଖ ଘୋର ;
ଏକା ଶରକେ ଛଡ଼ାଇ ଦେବ ବଡ଼ାଇପାକ ତୋର ।
ଏହା କହି ସେ ତାପସବର ଉପରେ ତୋଳେ ଧନୁ,
ଚକ୍ଷୁ ତାର ଜଳଇ ରାଗେ କମ୍ପି ଉଠେ ତନୁ ।
ସୂର୍ଯ୍ୟ ଭୟେ ଆକାଶ ଛାଡ଼ି ମର୍ତ୍ତ୍ୟେ ଆସି ଖରେ,
ବିପ୍ର ବେଶେ ଋଷିର ପାଶେ ଭାଷିଲେ ଯୋଡ଼ିକରେ,
"ମୁନି ଗୋସାଇଁ, ଅପରାଧଟା କେଉଁଠି ମୋର କହ,
ଜ୍ୟେଷ୍ଠ ମାସ କିରଣ ସତ ପ୍ରଖର ଅତିଶୟ ।
ତା' ନ ହେଲେ କିପରି ପୁଣି ପାଚିବ ଏତେ ଫଳ ?
କିପରି ମେଘ ସୃଷ୍ଟି ହେବ ବାଷ୍ପ ହୋଇ ଜଳ ?"
ଜମଦଗ୍ନି କୋଳଇ ରାଗେ, "ସୂର୍ଯ୍ୟଠାକୁର ଶୁଣ,
ଦଣ୍ଡ ଆଗେ ନେଲି ସାରିଲେ ଗାଇବୁ ପଛେ ଗୁଣ ।"
ବିନୟେ ରବି ବୋଇଲେ, "ମୁନି,
ମାଫ୍ କର ମୋ ଦୋଷ ।"
ଏଇ ପଦକ ଶୁଣି ଋଷିର ଉଭେଇଗଲା ରୋଷ ।
ବୋଲଇ ଋଷି, "ସୂର୍ଯ୍ୟଠାକୁର, ରୌଦ୍ରତାପେ ତୋର
ପତ୍ନୀ ମୋର ଭୋଗଇ ଦେଖ କି ଯାତନା ଘୋର ।
ଏହାର କିଛି ଉପାୟ କର;" ସୂର୍ଯ୍ୟ ତହୁଁ ଧୀରେ
ସୁନ୍ଦର ଫେଇ ଦୁଇଟି ଜିନ ଦେଲେ ତାପସକରେ ।
କେହି ତ କେବେ ଏ ଭଳି ଜିନ ଦେଖି ନ ଥିଲା ଭବେ,
କି ଯନ୍ତ୍ର ଏ ? ଋଷି ବିଚାରି ବୁଝି ନ ପାରେ ଲବେ ।
ବୋଇଲେ ରବି, "ଏଇଟି ଦେଖ ଏହାର ନାମ ଛତା,
ଉପରେ ଟେକି ଧରିଲେ ତାପୁଁ ରକ୍ଷା କରେ ମଥା ।
ଏଇ ହଳକ ଅଟଇ ଜୋତା ପାଦରେ ଥିଲେ ଏହା,
ଖରାରେ ପାଦ ତାତଇ ନାହିଁ ବାଟେହାଇର ଏ ସାହା ।

ଯେତେ ଶାସ୍ତ୍ର କରଣ ହେବେ ଆଉ ବାଧିବ ନାହିଁ,
ଆଣିଥିଲ ଏ ଶଙ୍ଖ ଦୁଇଟି ତୁମ ପତ୍ନୀ ପାଇଁ ।"

ରେଣୁକା-ପୀଡ଼ା, ଋଷିର ରାଗ ଉଭେଇଗଲା ଖରେ,
ସେଇଦିନଠୁଁ ଛତାଜୋତାର ଆଦର ଘରେ ଘରେ ।

## ଶଙ୍ଖ ପୂର୍ଣ୍ଣ ବାଜିଲା

ମହା ଆଡ଼ମ୍ବରେ କରୁଛନ୍ତି ଯାଗ
ଯୁଧିଷ୍ଠିର ମହାରାଜା,
ଆନନ୍ଦ ଉତ୍ସବ ଲାଗିଛି ନଗରେ
ବାଜୁଛି ମଙ୍ଗଳବାଜା ।

ନାନା ଦେଶୁଁ ଆସି ରାଜା, ଯୁବରାଜ
ହୋଇଛନ୍ତି ତହିଁ ଠୁଳ,
ଅତିଥି ବ୍ରାହ୍ମଣ ପ୍ରଜା ପାଟକରେ
ପୂରିଅଛି ସଭାସ୍ଥଳ ।

ଦାନ ଭୋଜନରେ ତୋଷି ସର୍ବଜନେ
ଆଦେଶିଲେ ମହାରାଜ,
"ବଜାଅ ରେ ଶଙ୍ଖ ଜାଣନ୍ତୁ ସକଳେ
ଯଜ୍ଞ ଶେଷ ହେଲା ଆଜ ।"

ଏହା ଶୁଣି ବେଗେ ଶଙ୍ଖ ଦେଇ ମୁଖେ
ଫୁଙ୍କିଲେ ସଜୋରେ ଭୀମ,
ମାତ୍ର ଏ କ'ଣ ହେଲା ! ଶଙ୍ଖ ନ ବାଜିଲା
କଲେ ଯେତେ ପରିଶ୍ରମ ।

ଆଚମ୍ବିତ କଥା ଦେଖି ଯୁଧିଷ୍ଠିର
ବୋଲନ୍ତି କେଶବେ ଗୃହିଁ,
"କହ କି କାରଣେ ଶଙ୍ଖ ନ ବାଜଇ,
ସବୁ ଜାଣ ଭବଗ୍ରାହୀ ।"
କେଶବ କହିଲେ, "ଶୁଣ ଯୁଧିଷ୍ଠିର,
ରହିଛି ଟିକଏ ଦୋଷ,
ସକଳ ପ୍ରଜାଏ ଯଜ୍ଞସ୍ଥଳେ ଆସି
ଲଭି ତ ନାହାନ୍ତି ତୋଷ ।
ଅଛି ଏ ନଗରେ ବାଲ୍ମୀକି ମୋଚି
ମହା ପୁଣ୍ୟବନ୍ତ ସେହି,
ଏ ମହାସଭାକୁ ଡାକନାହିଁ ତାଙ୍କୁ,
ଯଜ୍ଞ ଶେଷ ହେବ କାହିଁ ?"
ଶୁଣି ଯୁଧିଷ୍ଠିର ଆଗୁରେ କହନ୍ତି,
"ଯାଅ ଭାଇ ଭୀମସେନ,
ସେ ସାଧୁ ପୁରୁଷେ— ଉଚିତ ଆଦରେ
ଯଜ୍ଞସ୍ଥଳେ କରି ଆଣ ।"
ରାଜ-ଆମନ୍ତ୍ରଣ ପାଇ ବାଲ୍ମୀକି
ବିନୟେ ନୁଆଇଁ ମଥା
ହରଷିତେ ହେଲ ରାଜଦ୍ୱାରେ ଉଭା
ମୁଖୁଁ ନ ବାହାରେ କଥା ।
ଶଙ୍ଖ ହୁଳହୁଳି ପଡ଼ିଲା ଉଚ୍ଛୁଳି
ଦ୍ରୌପଦୀ ପାଟରାଣୀ
ବନ୍ଦାପନା କରି ନେବେ ବୋଲି ତାଙ୍କୁ
ଆସିଲେ ସମସ୍ତ ଜାଣି ।
କିନ୍ତୁ ଏ କି ହେଲା ! ତାଙ୍କ ହାତୁଁ ଖସି-
ପଡ଼ିଲା ବନ୍ଦାଣ ଥାଳି,
ମୋଚିଙ୍କୁ ଅନାଇ ଫେରିଗଲେ ରାଣୀ
ଘୃଣା ସରମରେ ଜଳି ।

ନାଗପୁଣେ ଭେଟି　　କହନ୍ତ ଦ୍ରୌପଦୀ
ଘୋର ଅଭିମାନଭରେ—
"କପର କମ୍ବଳ　　ବନ୍ଦାଇବା ପାଇଁ
ଏହି ହୀନ ମୋଚିଟାରେ ?"
କେଶବ ବୋଇଲେ,　　"ଶୁଣ ରାଜରାଣୀ,
ନ ବୁଝି କରୁଛ ରାଗ,
ଅତିଥିରେ ବରି　　ହତାଦର କଲେ
ବୃଥା ହେବ ଏହି ଯାଗ ।
ଦ୍ରୁପଦ ରାଜାର　　ଝିଅ ହୋଇ ପୁଣି
ପାଣ୍ଡବର ପାଟରାଣୀ,
ସକଳ ପ୍ରଜା ଯେ　　ସନ୍ତାନ ତୁମର
ପାରୁନା କି ଏହା ଜାଣି ?
ଗୁଣ ସିନା କରେ　　ମନୁଷ୍ୟକୁ ବଡ଼
ଜାତି ବଡ଼ କରେ ନାହିଁ,
ମୋଚି ହେଲା ବୋଲି　　କି ଦୋଷ କଲା ସେ
ଘୃଣା କଲ ଏଥିପାଇଁ ?
ମେହର ଡକାଏତି　　ହୀନ କାମ ସିନା
ଶ୍ରେଷ୍ଠ ଲୋକ କହି ତାରେ,
ଶ୍ରମ କରି ଯେହୁ　　ସମାଜ ସେବଇ
ସେ କି ହୀନ ହୋଇପାରେ ?"
ଲାଜେ ରାଣୀଙ୍କର　　ମୁଖ ନଇଁଗଲା
ଲୋତକ ପଡ଼ିଲା ଝରି,
ଫେରି ଆସି ପୁଣି　　ବନ୍ଦାଇ ନେଲେ ସେ
ମୋଚିକୁ ଆଦର କରି ।
ସଭାରେ ଉଠିଲା　　ଜୟ ଜୟ ଧ୍ୱନି
ସକଳେ ଲଭିଲେ ତୋଷ,
ବାଜା ଉଠିଲା ସେ　　ଶଙ୍ଖ ପୁଣି ଉଚେ
ଶୁଭେ ଯଜ୍ଞ ହେଲା ଶେଷ ।

## ଦସ୍ୟୁ ରତ୍ନାକର

ଘୋର ବନେ ଲୁଚି ବସି ଦସ୍ୟୁ ରତ୍ନାକର
　　　　ମହାସୁଖେ କାଟୁଥାଏ ଦିନ,
ପଥିକ ଦେଖିଲେ ତାକୁ ଜୀବନରେ ମାରି
　　　　ଲୁଟି କରି ନିଏ ତାର ଧନ ।
ଦେବର୍ଷି ନାରଦ ଦିନେ ଆସୁଥିଲେ ଏକା
　　　　ନିକାଞ୍ଚନ ସେହି ବନପଥେ,
ରତ୍ନାକର ଆଗେ ଆସି ଓଗାଳିଲା ବାଟ
　　　　ଶାଣିତ ଛୁରିକା ଧରି ହାତେ ।
ମୁନିଙ୍କି ବୋଲଇ ରାଗେ, "ଦେଇ ଯା ଗୋସାଇଁ
　　　　ଧନ ଯାହା ଅଛି ତୋର ପାଶ,
ନୋହିଲେ ଛଡ଼ାଇ ନେଇ ତୋଠାରୁ ସକଳ
　　　　ଜୀବନ କରିବି ତୋର ନାଶ ।"
ମୁନି ପଚାରିଲେ ତାକୁ କୋମଳ ବଚନେ,
　　　　"ସତ କଥା କହିବୁ କି ବାପ !
କାହିଁକି ଏ ହୀନ ବୃତ୍ତି ଆଚରି ଜୀବନେ
　　　　ଅରଜୁଛୁ ମହାଘୋର ପାପ ?"
ରତ୍ନାକର ବୋଲେ, "ମୁନି ! ପର ଧନ ହରି
　　　　ନିତି ମୋର ପରିବାର ପୋଷେ,
ପାଞ୍ଚପ୍ରାଣୀ ଲାଗି ସିନା ପାପଧନ ଆଣେ,
　　　　ଏକା କିଆଁ ଭାଗୀ ହେବି ଦୋଷେ ?"
"ମନେ ସିନା ଭାବୁ ତାହା, ଘରେ ତୋର କେହି
　　　　ଦାୟୀ ହେବେ ନାହିଁ ଏଥିଲାଗି,
ପଚାରି ତୁ ବୁଝି ଆସ," କହିଲେ ନାରଦ
　　　　"ଏ ପାପରେ କିଏ ହେବେ ଭାଗୀ ।"

"କପଟେ ଭୁଲାଇ ମୋତେ କହୁଛୁ ଏ କଥା,"
ରତ୍ନାକର ମନେ ମନେ ଭାବେ,
"ଏହିକ୍ଷଣି ଘରେ ଯାଇ ପଚାରି ବୁଝିବି
ସତ ଅବା ମିଛ ଏହା ବଳେ ।"

ଏହା ଭାବି ଲତାଜାଲେ ବାନ୍ଧି ମୁନିବରେ
ଚଳୁଥିଲେ ଅତି ସାବଧାନେ
ଘରେ ଯାଇ ପଚାରିଲା ଜଣ ଜଣ କରି
ଯେତେ ଥିଲେ ପରିବାରଜନେ—

"ନିତି କରି ନରହତ୍ୟା ତୁମ ଲାଗି ମୁହିଁ
ଧନରତ୍ନ ହିଏ ଯାହା ଆଣି,
ସେ ପାପରେ ଭାଗୀ ତୁମେ ହେବ କି ନ ହେବ
ମନ ଖୋଲି କହ ଏହିକ୍ଷଣି ।"

କେହି ହେଲେ ନାହିଁ ରାଜି, କୋଇଲେ "ତୋହର
କର୍ମଫଳ ଭୋଗିବୁ ତୁ ଏକା",
ମହାଦୁଃଖେ ଦସ୍ୟୁ ଛୁଟି ବନେ ବାହୁଡ଼ିଲା
ଏତେ ଦିନେ ମନେ ହେଲା ଦେକା ।

ବନ୍ଧନ ଫିଟାଇ ଖରେ ମୁନିପାଦେ ପଡ଼ି
କାନ୍ଦି କାନ୍ଦି କହେ ରତ୍ନାକର,
"ମହାପାପ ଏ ଜୀବନେ କରିଛି ଗୋସାଇଁ !
ଦୟା କରି କହ ପ୍ରତିକାର ।"

ଧୀରେ ହସି ମୁନିବର କହନ୍ତି, "ରତନ !
ରାମନାମ ଏକଲୟେ ଜପ,
ମହାଶାନ୍ତି ଅବହେଳେ ଲଭିବୁ ଜୀବନେ
ଧୋଇଯିବ ସବୁ ତୋର ପାପ ।"

ମୁନିଙ୍କ ଚରଣ ଧୂଳି ଶିରେ ଘେନି ଦସ୍ୟୁ
ସେହିକ୍ଷଣି ଚକ୍ଷୁ ମୁଦି ବସେ,
ପଇଟିଲା ନାହିଁ ତୁଣ୍ଡେ ରାମନାମ ତାର,
କେବଳ ସେ 'ମରା' 'ମରା' ଘୋଷେ ।

ବନ ଯାଇ ରାତି ହେଲା ବସି ଏକଧ୍ୟାନେ,
ରତୁଁ ରତୁଁ ରାତି ଗଲା ପାହି,
କେତେ କାଳ ବସିଲେ ସେ ରାମନାମ ଜପି
କେହି ତାହା ନ ପାରିବ କହି ।

ଉଇହୁଙ୍କା ମାଡ଼ିଗଲା ଶରୀରେ ତାଙ୍କର
ତିଳେ ହେଁ ସେ ନ ପାରିଲେ ଜାଣି,
ତପସ୍ୟାରେ ସିଦ୍ଧି ଲଭି ଉଠିଲେ ଯେ ଦିନ୍
ହେଲେ ସେହୁ ମହା ଯୋଗୀ ଜ୍ଞାନୀ ।

ରାମାୟଣ କଥାମାଳା କଲେ ସେ ରଚନା
ସଂସ୍କୃତରେ ସୁମଧୁର ଗୀତେ,
ମହର୍ଷି ବାଲ୍ମୀକି ନାମେ ହେଲେ ସେ ବିଦିତ
ଆଦିକବି ବୋଲାଇ ଭାରତେ ।

## ବିଚିତ୍ର ବିଚାର

ରାଜା ଆଗେ ଦିନେ ଶିଶୁଟିଏ ଧରି
ମିଳିଲେ ରମଣୀ ଦୁଇ,
ବୋଇଲେ, "କଳହ ଲାଗିଛି ଆମର
ଏହି ଶିଶୁପୁତ୍ର ନେଇ ।

କଏ ଏ ଶିଶୁର ପ୍ରକୃତ ଜନମା
ଶିଶୁରେ କାହାର ଦାବୀ ?"
ଗୋଟିଏ ଶିଶୁର ଦୁଇଟି ଜନମା !
ରାଜା ନ ପାରନ୍ତି ଭାବି ।

ବକ୍ଷେ କର ମାରି କହିଲେ ଏକ ନାରୀ,
"ମୁହିଁ ଏ ଶିଶୁର ମାତା,
ମୋହର ଦେହର ରୂପରେଖ ଦେଖ,
ତା ଅଙ୍ଗେ ଲହିଛି ଧାତା ।"

ଆନ କହେ ଧୀରେ, "ରବି ଶଶୀ ଯେବେ
ସତ୍ୟେ ସାକ୍ଷୀ ଥିବେ ଧରା,
ମୋହର ଜଠରୁ ଜନମିଛି ଶିଶୁ
ସାକ୍ଷୀ ଏ ଗଗନ ତାରା ।

ଦୁହେଁ ପ୍ରସବିଲୁ ଦୁଇଟି ସନ୍ତାନ
ରୂପ ରଙ୍ଗ ଏକାପରି,
ଜାଣେନା ମୁଁ ଆହା କାଲ କେତେବେଳେ
ନେଲା ତା ଶିଶୁଟି ହରି ।

ନୀରବ ନିଶିଥେ ଆସି ସେ ମୋ ପୁରେ
ନିଦ୍ରାଗତା ମୋତେ ଦେଖି,
ନେଇଗଲା ମୋର ହୃଦୟ-ରତନେ
ମୃତ ଶିଶୁଟିକ ରଖି ।

ନିଦ୍ରାଭଙ୍ଗେ ମୁହିଁ ଚମକି ଦେଖିଲି
ସୁତ ମୋର ନାହିଁ କୋଳେ,
ଶବ ଶଯ୍ୟା ପ୍ରାନ୍ତେ ପାଶେ ତାର ଯାଇ
ପୁତ୍ରକୁ ଦେଖିଲି ଡୋଳେ ।

ମୋ ହୃଦୟଧନ ଲେଖିଛନ୍ତି ମୋର ସେ
ବୋଲେ, 'ଏ ମୋହର ସୁତ',
ନ୍ୟାୟ ଦରବାରେ ବିଗ୍ଣର ବୁଝିନ୍ତୁ
ମିଛ ଅବା ଏହା ସତ ।"

ସଭାଜନ ଯେତେ ଚକିତେ ବୃତ୍ତାନ୍ତ
ଶୁଣି ଏ ଅଦ୍ଭୁତ କଳ,
ଭାବି ଭାବି ରାଜା ଗମ୍ଭୀରେ ଅନାଇ
ଆଦେଶିଲେ ଏହିଭଳି—

"ଦୁଇଖଣ୍ଡ କରି କାଟି ଏ ଶିଶୁକୁ
ଉଭୟରେ ଦିଅ ବାଣ୍ଟି ।
ସୁନାକୁ ପୋଡ଼ିଲେ ଜଣାଯାଏ ସିନା
କିଏ ଭେଲ କିଏ ଖାଣ୍ଟି ।"

ଶୁଣି ଏ ଆଦେଶ ଭୟେ ଏକ ନାରୀ
କହେ ଦୁଃଖ କରି ମନ,
"ଲୋଡ଼ା ନାହିଁ ମୋର, ଯହିଁ ରହୁ ପଛେ
ଜୀବିତ ଥାଉ ମୋ ଧନ ।"

"ସେହି ଅଟେ ତାର ପ୍ରକୃତ ଜନନୀ
ଶିଶୁ ଦିଅ ତାର କୋଳେ",
ଆଦେଶିଲେ ରାଜା "ଅପରକୁ ନେଇ
ଛାଡ଼ିଆସ ବନ୍ଦୀଶାଳେ ।"

ବକ୍ଷେ ଧରି ଶିଶୁ ଜନନୀ ଫେରଇ
ସୁମରି କରୁଣାମୟ,
ସତ୍ୟେ ଯାର ମତି ସତ୍ୟ ଯାର ବଳ
ସଦା ସେ ଲଭଇ ଜୟ ।

# ନାପିତର ଶିକ୍ଷାଲାଭ

ଥିଲା ଏକ ଦୂର ଦେଶେ    ଆଲି ନାମେ ନାପିତ ସେ
ବିଚକ୍ଷଣ ଥିଲା ତାର ହାତ,
ଆଖି ବୁଜି ଧରେ ଖୁର    କାଟେ ନଖ ଦାଢ଼ି ଚୂଳ
କାହା ଅଙ୍ଗେ କରେ ନାହିଁ ଘାତ ।

କହିଲେ ସକଳ ଜନେ    ଆଲି ଭଳି ଆଉ ଜଣେ
ନାପିତ ଜଗତେ ନାହିଁ କେହି,
ଧନୀ, ରାଜା, ମହାଜନ    ଶତ୍ରୁ, ମିତ୍ର, ବଡ଼, ସାନ
ସକଳେ ତା ଗୁଣ ହେଲେ ଗାଇ ।

ଦିନୁ ଦିନ ଦଶ ଦିଶ    ପ୍ରସରିଲା ତାର ଯଶ
ଅହଙ୍କାରେ ଆଲି ଗଲା ଫୁଲି,
ଗରବ ଯେ ବଢ଼େ ମନେ    ଧରାକୁ ସେ ସରା ମଣେ
ବିଦୁର ବିବେକ ସବୁ ଭୁଲି ।

ଦିନେ ଜଣେ କାଠୁରିଆ    ଦୁଆରେ ତା ହୋଇ ଠିଆ
ଡାକ ଦିଏ, "କିଣିବ କି କାଠ ?"
ନାପିତ ବାହାରି ଆସି    କାଠ ଦେଖି ମନ ଖୁସି
ମୂଲ୍ୟ ଯାଚିଦେଲା ଅଣା ଆଠ ।

"ଗଧପିଠି ପରେ ତୋର    କାଠ ଅଛି ଯେତେ ଭାର
ସବୁ ଦେଲେ ପାଇବୁ ଏ ଧନ",
କାଠୁରିଆ ରାଜି ହୋଇ    ସବୁ କାଠ ତାକୁ ଦେଇ
ମାଗେ "ମୂଲ୍ୟ ଦିଅ ମହାଜନ ।"

ଚତୁର ନାପିତ ହସି  ବୋଇଲ, "ଏ କି ବଦମାସି,
କାଠବାଡ଼ା ଦେଉନାହୁଁ କିଆଁ ?"
"କେଉଁ ରାଜ୍ୟ କଥା ଏହା ?" ରୋଷେ ଗରଷେ କାଠୁରିଆ
ଆଣି କହେ, "ଜବାବ ସେଇଆ ।"

କାଠୁରିଆ 'ନାହିଁ' କରେ  ନାପିତ ନ ଛାଡ଼େ ତାରେ
"ସବୁ କାଠ କିଣିଅଛୁ ମୁହିଁ,
ବାଡ଼ାଟା ତ କାଠ-ଗଡ଼ା  ଦେଇଯା ରେ ବୋକା ବୁଢ଼ା
ଆଠଅଣା ମୂଲ୍ୟ ତୋର ନେଇ ।"

ବହୁ ବେଳ ଦୁଇଜଣ  କଲେ ତହିଁ ବାକ୍ୟ-ରଣ
ଶେଷେ ହେଲା ନାପିତର ଜୟ,
କାଠୁରିଆ ଦୁଃଖମନେ  ଗଲା ବାଦଶା-ଭବନେ
ଜଣାଇଲା ସକଳ ବିଷୟ ।

ଗରିବ ଗୁହାରି ଶୁଣି  ବାଦଶାହା ମନେ ଗୁଣି
ଉପାୟ ପାଞ୍ଚିଲେ ସେହିକ୍ଷଣେ,
ଗୋପନେ କ ଶେଷ କଥା  କାନେ ତାର କହିଲେ ତା
ସେହି କାଠୁରିଆ ଏକା ଜାଣେ ।

କାଠୁରିଆ ତୋଷଭରେ  ସେଦିନ ଫେରିଲା ଘରେ
ଏହାପରେ ଗଲା କେତେ ମାସ,
ଦିନେ କାଠୁରିଆ ବୁଢ଼ା  ଆଲହାରେ ହୋଇ ଛୁଡ଼ା
ଡାକେ, "ମୋତେ କ୍ଷୌର କର ଆସ ।

ଆଉ ଜଣେ ସାଥୀ ମୋର,  ଦୁଇଜଣ ହେବୁ କ୍ଷୌର
କେତେ ନେବ କହ ମୋତେ ଆଗେ ?"
"ଦୁଇ ଟଙ୍କା ଦେବୁ ଯେବେ  କ୍ଷିଅର କରିବି ତେବେ"
ନାପିତ ବୋଲଇ ମହାରାଗେ ।

"ଆଚ୍ଛା ହଅଯିବ ତାହା"    ରାଜ ହେଲା କାଠୁରିଆ
ଆଲି ତାକୁ କ୍ଷୌରକରି ସାରି
ପଚାରେ, "ତୋ ସାଥୀ କାହିଁ ?" "ରାସ୍ତାରେ ସେ ଅଛି ଭାଇ"
କାଠୁରିଆ କହେ ହାତ ଠାରି ।

ଆଲି ବାହାରକୁ ଗଲେହିଁ,    ଗଧଟାଏ ଦେଖି କହେ
"ଏଇକି ରେ ସାଥୀ ତୋର ପାଜି ?"
କାଠୁରିଆ କହେ ଧୀରେ, "ସେଇ ମୋର ସାଥୀ ଆରେ
କ୍ଷୌର କରିଦିଅ ତାକୁ ଆଜି ।"

ରାଗେ ଆଲି ହତଜ୍ଞାନ    ଧରି କାଠୁରିଆ କାନ
ଧକ୍କା ମାରି ଘରୁ ଦେଲା ତଡ଼ି;
କଥା ଗଲା ରାଜାକାନେ    ଆଲିକୁ ସିପାହୀମାନେ
ଧରିନେଲେ ଦେଇ ହାତକଡ଼ି ।

ଦୁଇପକ୍ଷ କଥା ଶୁଣି    ବାଦଶା କହିଲେ ବାଣୀ
"ଆଲି ରଖେ ଜବାବର ଟାଣ,
କାଠ ସଙ୍ଗେ କାଠ ଗଧ    ମୂଲ୍ୟ ହୋଇପାରେ ଯଦି,
ଗଧଟାକୁ ଏଇଠାକୁ ଆଣ ।"

ଚାରି ଗୋଡ଼ ବାନ୍ଧିଦେଇ    ଗଧକୁ ଦେଲେ ଶୁଆଇ
ବାଦଶା ଆଦେଶ ଲଙ୍ଘେ କିଏ ?
ଆଲି ତାର ଖୁର ଧରି    ଅପମାନେ ମୁହଁ ମାରି
ଗଧଟାକୁ କ୍ଷୌର କରିଦିଏ ।

ଅହଙ୍କାରୀ ନାପିତର    ଦର୍ପ ଗଲା ଏଇଥର
ହରୂପ ହଣିଲା ସିନା ଗଧ,
ଶୁଣିଲେ ଯେ ଦେଶବାସୀ    ସତେକ ହୋଇଲେ ଖୁସି
ବୋଇଲେ, "ଏ ଠିକ୍ ପ୍ରତିଶୋଧ ।"







# ରୂପ ଦେଖି ଭୁଲନାହିଁ

ଘୋର ବଣ ଭିତରେ          ଝରଣା କୂଳେ ଥରେ
ହରିଣଟିଏ ଗୃହଁ ପାଣିକ
ଦେଖିଲା ଅବିକଳ          ପଡ଼ିଛି ଛାଇ ତାର
ଭାବିଲା ଦେଖି ରୂପଠାଣିକ—
"ଶିଙ୍ଗ ଦୁଇଟି ମୋର          ଆହା କ ମନୋହର !
ମେଲିଛି ଗଛଡାଳ ପରାଏ,
ଦେହଉ ଯେତେ ସୁନ୍ଦର          ଏହାର ଶୋଭା ସିନା
ଶିକାରୀ ମନେ ଲୋଭ କରାଏ ।"
କହେ ଗୋଡ଼କୁ ଦେଖି—          "ବିଧାତା ଅବିବେକୀ
କାହିଁ କ ଗଢ଼ିଲା ଏ ଗୃହଟା ?
ଏଡ଼କ ସରୁ କରି          ବାଉଁଶକଣି ପରି
ଉପରେ ଦେହ ଏତେ ଧାଗାଟା !"
ଏଣେ ଦଳେ ଶିକାରୀ          କୁକୁର ସଙ୍ଗେ ଧରି
ଆସିଲେ ସେହି ବନପଥରେ,
ଦେଖି ତାଙ୍କୁ ଗ୍ଧନଅାଁ          ହରିଣ ମାରି ଡିଆଁ
ପଶିଲା ଘୋର ବଣ ଭିତରେ ।
ଗହଳ ଲଟା କଢ          ଶିଙ୍ଗ ଦୁଇଟି ଛଢ
ଅଟକିଗଲା ଲଟାଗଛରେ,
ବୃଥା ଟାଣି ଓଟାରି          ହରିଣ ଗୃହେଁ ଫେରି
କୁକୁର ଲାଗିଲେଣି ପଛରେ ।
ଭାବିଲା ଏତେବେଳେ,          'ପଳାଇଥାନ୍ତି ହେଲେ,
ଶିଙ୍ଗ ହୋଇଲା ସିନା ଭଗାରି,
ଗୋଡ଼ ଗୃହେଁଟି ମୋର          ହଜୁଲା ଗଢ ତାର
କ କରିଥାନ୍ତେ ଘୃର ଶିକାରୀ ?'



କେବଳ ରୂପ ଦେଖି      କେବେଁ ନ ଯିବ ଠକି
ଆଖିକି ଭଲ ଯିନା ଦିଶିବ,
ଭଲ ଗୁଣ ନ ଥିଲେ      ଦେଖାସୁନ୍ଦର ହେଲେ
କେଉଁ କାମକୁ ତାହା ଆସିବ ?

## ଯୁଗେ ଯୁଗେ ସାକ୍ଷୀ

ତରତର ଗୁଲି,   ଡିଏଁ କି ଦଉଡ଼େ   ନ ହୁଏ ଜାଣି,
ଥରେ ଥରେ ରହି   ଡାକ ଦେଉଥାଏ   ଗଳାକୁ ଟାଣି,
ଚୁମୁଚୁମିଆଁ ତା   କଅଁଳ ଦେହଟି   ଗାଲଗୁପର
ମନ ହୁଏ ଥରେ   ଆଉଁସି ଦେବାକୁ   କୋଳରେ ଧର ।
ପାଉଁଶିଆ ଦେହେ   ଧଳା ଗାର ତାର   ଥିବ ତ ଦେଖି,
ଗୁଣ୍ଡୁଚି ପିଠିରେ ଏତେ ଯତନରେ
ଜାଣିଛ କି କିଏ ଦେଇଛୁ ଲେଖି ?

ପୁରାଣ କଥା ସେ,   ଆଜକୁ ଅନେକ   ବରଷ ତଳେ
ପ୍ରଭୁ ରାମଚନ୍ଦ୍ର   ସେତୁ ବାନ୍ଧୁଥିଲେ   ସାଗରଜଳେ;
ସେଇ ସେତୁପରେ   ସଇନ ସାମନ୍ତ   ସାଥିରେ ଧରି
ଲଙ୍କାଗଡ଼ ଜିଣି   ସୀତା ଉଦ୍ଧାରିବେ   ସତ୍ୱର କରି ।
କପିଥାଟ ଯେତେ   ଲାଗିଗଲେ ସବୁ   କାମରେ ମାତି,
ଅଥଳ ପାଣିରେ ପଥର ଡାଳିଲେ
ଖରା ତରା ନାହିଁ ଦିବସ ରାତି ।

ରାମ ଦେଖୁଥିଲେ ନନ୍ଦନ ସେଇ ପଥରବୁଢ଼ା,
ଗୋଟିଏ ଘଟଣା ଦେଖି ସେଦିନେ ତାଙ୍କୁ ଲାଗିଲା ନୂଆ ।

ଓଦା ସରସର ଟିକି ଗାବଟିଏ ଭୂଇଁରେ ଗଡ଼ି
ଧାଇଁ ଧାଇଁ ସେତୁ- ପରେ ଦେଉଥିଲା ଦେହକୁ ଝାଡ଼ି;
ସତେ ଅବା କାହୁଁ ଶିଖିଥିଲା ସିଏ ମହତ ମନ୍ତ—
'ଯେତିକି ପାରିବ କାମ କରିଯିବ,
ସାନ ବୋଲି ମନେ ନ ବାନ୍ଧ ଖିନ୍ତ ।

ଦେଖି ରାମଙ୍କର ଆଖି ଛଳଛଳ ହୋଇଲା ଲୁହେ,
ଭାବିଲେ ଏହାର ସରିକି ହୋଇବେ ମଣିଷପୁଏ ?
ନଇଁପଡ଼ି ତାକୁ କୋଳକୁ ଉଠାଇ ନେଲେ ଆଦରେ,
ଆଉଁସିଦେଲେ ତା ପିଠିକୁ ଶ୍ରୀରାମ ଗରଧାଭରେ ।

ଗୁଣ୍ଡୁଚି ମୂଷାର ପିଠିରେ ଦେବତା ଅଙ୍ଗୁଳି ରେଖା
ସେଦିନୁ ଅଲିଭା ଧଳାଗାର ହୋଇ ରହିଲା ଲେଖା ।
ଆଜି ବି ସେକଥା ଗୁଣ୍ଡୁଚି ଜଣାଏ ମାନବେ ଡାକି—
'ଦେବତା ଆଶିଷ ଲଭେ ନିରଳସ
ଯୁଗେ ଯୁଗେ ଅଛି ମୁଁ ତାର ସାକ୍ଷୀ ।'

( ୧୯୭୭ ପ୍ରଥମ ଭାଗ, ପ୍ରଥମ ସଂଖ୍ୟା
'ଶିଶୁଲେଖା'ରେ ପ୍ରକାଶିତ )




## ରାତି ପାହିଲା

ରାତି ପାହିଲା    ସକାଳ ହେଲା,
ଘରେ ଘରେ କୁଆ    ଡାକ କହିଲା,
ରାତି ପାହିଲା ।

ପୂରୁବ ଆକାଶ    ସିନ୍ଦୂର ଫାଟି
ସୂରୁଯ ଦେବତା    ଆସିଲେ ଉଠି,
ଆଲୁଅ ଦେଖି    ଗାଇଲେ ପକ୍ଷୀ,
ମୁହଁ ଧୂଅ ବୋଲି    ମାଆ କହିଲା,
ରାତି ପାହିଲା ।

ଅଣବଦ ଥିଲା    ଜଗତଯାକ,
ଗହଳ ଚହଳ    ଲାଗିଲା ଦେଖ;
ଭଅଁର ଆସି    ଫୁଲରେ ବସି
ଗୁଣୁ ଗୁଣୁ ଗାଇ    ମହୁ ଖାଇଲା,
ରାତି ପାହିଲା ।

ତରତର ହୋଇ    ନୂଆବୋହୂଟି
ବାସି କାମ ସାରେ    ସକାଳୁ ଉଠି,
ଗୁହାଳୀ ଗୁଡ଼ି    ପଢ଼ିଲେ ପାଠ,
ଗୃହୀ ଭାଇ ତାର    ହଳ ଧଇଲା,
ରାତି ପାହିଲା ।

# କୁଆପଥର

ଚାଲ ଚାଲ ବେଗେ ଧାଇଁ
ଉଠାଇଲା ମେଘ ରେ,
କଳା କଟିକଟି ଦେଖ
ଢଣେ ଚଉଦିଗ ରେ ।
ଘଡ଼ଘଡ଼ ଘଡ଼ଘଡ଼
ଚକମକ ବିଜୁଳି,
ବରଷିବ କେତେ ପାଣି
ବାଟଘାଟ ଉଚ୍ଛୁଳି ।
ବତାସ ଉଡ଼ାଇ ଧୂଳି
ଆସିଲାଣି ମାଡ଼ି ରେ,
ପଳାଇବା ଚାଲ ଭାଇ
ଗଛମୂଳ ଛାଡ଼ି ରେ ।

ଟପ ଟପ ଶୁଭିଲାଣି
ବରଷିଲା ଏଥର,
ଧାଇଁ ଆସ, ଦେଖ ଭାଇ
କେତେ କୁଆପଥର ।
ଧଳା କାଚଖଣ୍ଡ ପରି
ପଡ଼ିଲାଣି ଅଜାଡ଼ି,
ଆସ ଭାଇ ଗୋଟାଇବା
ଅଞ୍ଜଳି ରଖ ସଜାଡ଼ି ।
କି ହେଲା ଏ ! ଚାହିଁ ଚାହିଁ
ସବୁ ଗଲା ମିଳାଇ,
ହେମାଳ ଲାଗୁଛି ହାତ
ଆସ ଯିବା ପଳାଇ ।

## ନଈକୂଳ

ଖେଳ ସରିଗଲା ଭାଇ    ବେଳ ଗଲା ଚାଲି,
ନଈକୂଳ ଆଡ଼େ ଆସ    ଯିବା କଏ ବୁଲି ।
ସୁଲୁ ସୁଲୁ ପବନରେ    ମରିଯିବ ଝାଳ,
ପାଣିରେ ଦେଖିବା ଚାଲ    ମାଛଙ୍କର ଖେଳ ।
ଠାଏ ବୁଡ଼ ଠାଏ ଉଠି    କେଡ଼େ ତରତରେ
ମାଛ ଖାଇ ପାଣିକୁଆ    ବୁଡ଼େ ପୁଣି ଥରେ ।
କୂଳରେ କାଣ୍ଡିଆ ବଗ    ଗୋଡ଼ଟାକୁ ଟେକି
ମାଛ ଖାଇବାକୁ ଦେଖ    ବସିଅଛି ଟାକି ।
ସେ କୂଳେ ନାଉରୀ ଭାଇ    ଗୀତ ଗାଇ ଗାଇ
କାତ ମାରି ମାରି ଡଙ୍ଗା    ନେଉଅଛି ବାହି ।
ଗାଆଁ ବୋହୂଝିଏ ଏବେ    ସନ୍ଧ୍ୟା ହେଲା ଜାଣି
ଗରା ମାଠିଆରେ ଭରି    ନେଉଛନ୍ତି ପାଣି ।
ସୁଲୁ ସୁଲୁ ପବନଟି    ଲାଗେ ବଡ଼ ସୁଖ,
ଏଇଠାରେ ବସିଥିଲେ    ନ ବାଧିବ ଶୋକ ।

## ଆକାଶ

କେଡ଼େ ନିର୍ମଳ ଅଟ ରେ    ସୁନୀଳ ଆକାଶ,
ନିତି ନୂଆ ନୂଆ ରୂପ    କରୁଛ ପ୍ରକାଶ ।
ଖରା ବରଷା ତା ପରେ    ଶରତ ହେମନ୍ତ,
ପଛେ ପଛେ ଆସେ ଋତୁ    ଶିଶିର ବସନ୍ତ ।
ସବୁ ଋତୁ ପାଇଁ ତୋର    ବେଶ ଭଳି ଭଳି,
କଏ ଅଛି ସୁନ୍ଦର ରେ    ତୋହଠାରୁ ବଳି ?

କେବେ ଧଳା ମେଘମାଳେ ଆବରୁ ତୋ ଅଙ୍ଗ,
କେବେ ବୋଳହେଉ ନାଲି ହଳଦିଆ ରଙ୍ଗ ।
ଶିରେ ତୋର ଦିନମଣି ହୀରାପରି ଦିଶେ,
ଟିକି ଟିକି ତାରାଗଣ ଜହ୍ନଟୋପା କି ସେ !
କେତେ ରଙ୍ଗେ ଝଟକଇ ବିଜୁଳି ତୋ ଦେହେ,
କେବେ ଇନ୍ଦ୍ରଧନୁ ତୋର କଟିତଳେ ଶୋହେ ।
କୁଆଁ ର ପୁନଅଁ ଜହ୍ନ ବରଷକେ ଥରେ,
ମୁକୁତାର ଥାଳପରି ଜନ ମନ ହରେ ।
କେବେ ଘୋର ଭୟଙ୍କର ଧୂସର ରୁ ଦିଶୁ,
କେବେ କଳା କଟିକଟି ଅନ୍ଧକାରେ ମିଶୁ ।
କୁହୁଡ଼ି ବତାସ ମେଘ ଦେହେ ତୋର ମିଶି
ତୋ ଅନ୍ତର ପବିତ୍ରତା ନ ପାରନ୍ତି ନାଶି ।
ନିମିଷକେ ପୁଣି ତୋର ରୂପ ବଦଳଇ,
ବିରାଜୁ ତୁ ଶାନ୍ତ ନୀଳ ସୁନିର୍ମଳ ହୋଇ ।
ଜଗତର ମଳିନତା ଛୁଇଁ ନାହିଁ ତୋତେ,
ସେହି ସୁନିର୍ମଳ ଭାବ ଶିଖାଇ ଦେ ମୋତେ ।

## ନଈବଢ଼ି

ଆସିଲା ବରଷା ବଢ଼ି,
ବାଡ଼ଆଡ଼େ ବେଙ୍ଗ ଛାଡ଼ିଲେ ରଡ଼ି
ଶୂନ୍ୟେ ଶୁଭେ ଘଡ଼ଘଡ଼ି ।

ନଈ ନାଳ ଗଲା ପୂରି,
ବଢ଼ି ଦେଖି ପିଲା ଛାଡ଼ିଲେ ହୁରି,
ଖୁସୀ ମନେ ଝୁରି ଝୁରି ।

ଗୋଳିଆ ଦିଶିଲା ପାଣି,
ଫେଣ ଭସିଗଲା କେତେ କେଜାଣି
କେ ତାହା ପାରିବ ଗଣି ?
କାଠି କୁଟା ସଙ୍ଗେ ମିଶି,
କେତେ ଜୀବଜନ୍ତୁ ଗଣ୍ଡଲ ରେ ଭସି
ମାଛ ହେଲେ ବଡ଼ ଖୁସି ।
ଭାଙ୍ଗିଗଲା କେତେ ଘାଇ,
ଘରଦ୍ୱାର କେତେ ନେଲା ଭସାଇ
ଛଟପଟ ଗୋରୁଗାଈ ।
ଘୂଡ୍ ଘୂଡ୍ ଗରଜନ
ଶୁଣି ଭୟ ହେଲା ସବୁରି ମନ
ଭାବନାରେ ଗଲା ଦିନ ।
ସ୍ରୋତ ହେଲା ଅତିଶୟ,
ଚଉହଦ ହେଲା ଜଳକାମୟ
ଚାହିଁଲେ ଲାଗିଲା ଭୟ ।
ନଈ ପାରି ହେବା ପାଇଁ
ଛୁଣ୍ଡ ହେଲେ ଯେତେ ବାଟୋଇ ଯାଇ
ନାଉରି ଭାଇକୁ ଚାହିଁ ।
ବଢ଼ିପାଣି ଗଲା ଛାଡ଼ି,
କେତେ ହଲେ ଦେଲା ପଟୁ ଅଜାଡ଼ି
କେତେ ଜମି ନେଲା ଚାଡ଼ି ।
କାହା ଜମି କଲା ସୁନା,
ପୁରୁଣାକୁ ନୂଆ ନୂଆ ପୁରୁଣା
କାହା ଘର କଲା ଚୂନା ।
ବଢ଼ିପାଣି ଏତେ ମନ୍ଦ,
ସେଥି ପୁଣି ଦିଏ କେତେ ଆନନ୍ଦ
ଧନ୍ୟ ପ୍ରଭୁ ତୋର ଛନ୍ଦ !

# ଏଇ ଆକାଶେ

ଏଇ ଆକାଶେ
କେତେ ରୂପ ଧରି ବଉଦ ଭାସେ ।
ଆଖି ଝଲସାଇ ବିଜୁଳି ମାରେ,
ଘଡ଼ଘଡ଼ ନାଦେ ବସୁଧା ଥରେ,
ବରଷା ମାସ, ବାଆ ବତାସ,
ଚଉଦିଗ ଘୋଟି ଧୂସର ବେଶେ
ଏଇ ଆକାଶେ ।

ମେଘ ଖସି ଯେବେ ହୁଅନ୍ତି ସାଙ୍ଗ,
ଇନ୍ଦ୍ରଧନୁ ତାର ଦେଖାଏ ରଙ୍ଗ,
ଶରତ କାଳ, ସବୁ ନିର୍ମଳ,
କୁଆଁର ପୁନିଅଁ ଜହ୍ନଟି ହସେ
ଏଇ ଆକାଶେ ।

ଦିନସାରି ତାଙ୍କ ସାଇଜ ବୁଲି
ସୂରୁଯ ଦେବତା ଯାଆନ୍ତି ଗୁଲି,
ଆସଇ ରାତି, ଥରଇ ଛାତି,
କଳା କଟିକଟି ଅନ୍ଧାର ବେଶେ,
ଏଇ ଆକାଶେ ।

ଟିକି ଟିକି ତାରି କେତେ କେଜାଣି
ରାତିରେ ଆସନ୍ତି ନ ହୁଏ ଗଣି,
ଚମକ ମନେ ଦେଖଇ ଜନେ
ନିଆଁ ହୁଳା ପରି ଉଲ୍‌କା ଖସେ
ଏଇ ଆକାଶେ ।

ନାନା ଜାତି ପକ୍ଷୀ    ହରଷ ମନେ
ଉଡ଼ି ବୁଲୁଥାନ୍ତି    ନୀଳ ଗଗନେ,
ତାଙ୍କର ଆଗେ    ଗରଜି ରାଗେ
ଉଡ଼ାଜାହାଜଟା ମେଘରେ ପଶେ,
ଏଇ ଆକାଶେ ।

ସେ ଦେଶେ ଅଛନ୍ତି    କଉଳ ଜୀବ,
ତାଙ୍କୁ ଦେଖିବାକୁ    ମଣିଷ ଯିବ,
ସରଗ ବୁଲି    ଆସିବ ଚାଲି,
ରକେଟ ଛାଡ଼ୁଛି ସେଇ ସକାଶେ,
ଏଇ ଆକାଶେ ।

## ମେଘ

ଏତେ ଦିନ ପରେ ଆଜ    ଫିଟିଛି ମୋ ଦୁଆର,
ପରାଣେ ଉଚ୍ଛୁଳ ଉଠେ    ଆନନ୍ଦର ଜୁଆର ।
ଭାସି ଯାଉଥିଲି ନଭେ    ସମୀରଣ-ଦୋଳାରେ,
କିଏ ମୋତେ ଡାକଦେଲା    ଏ ମଧୁର ବେଳାରେ ?
ପବନ-ଦୋଳାରେ ଶୋଇ    ଦେଖିଲି ମୁଁ ସପନ
'ଜାଳ ଦେଇଗଲା ଧରା    ନିଦାଘର ତପନ ।'
ଭାଜିଗଲା ନିଦ ମୋର    ଦେହ ହେଲା ଶୀତଳ,
ଦିଅ ମୋତେ ପଥ ଛାଡ଼ି    ଯିବି ଏବେ ଭୂତଳ ।
ଥର ଉଠେ ଦେହ ମୋର    ଶୀତ ବାୟୁ ପରଶି,
ଆଉ ବେଳ ନାହିଁ, ବେଗେ    ଯିବି ମୁହିଁ ବରଷି ।
ଧାନ କ୍ଷେତେ କୃଷୀ ମୋତେ    ବସିଥିବ ଅନାଇ,
ଟପ ଟପ ଗୀତ ବାରେ    ଦେବି ତାକୁ ଶୁଣାଇ ।

ନଈ ସରୋବର ସେତେ   ଖୋଜ ତହିଁ ପଶିବ ,
ଭେକ ମୀନ ଆଦ୍ଧ ଜଳ—   ଜୀବଗଣେ ତୋଷିବ ।
ଜୀବଜନ୍ତୁ ଚରୁମୁଖେ   ଆଣିଦେବ ହରଷ,
ମୋର ବାରିଧାର ଲଭି   ଧରା ହେବ ସରସ ।
ନାନା ଜାତି ଫଳ ଫୁଲେ   ସଜାଇବ ଧରଣୀ,
ଦେଖାଇବ ନିତି ନିତି   ଅଦଭୁତ କରଣି ।
କେବେ ଇନ୍ଦ୍ରଧନୁ, କେବେ   ବିଜୁଳିର ଝଟକ,
କେବେ ପୁଣି ଦେଖାଇବ   ବହୁରୂପୀ ଛଟକ ।
କେବେ ଘୋର ଗରଜନେ   କେବେ ଝଡ଼ ସାଥିରେ,
କେବେ ଧୀରେ କଣିବଦେ   ପହଞ୍ଚିବ ରାତିରେ ।
ସଂହାର ମୂରତି ଧରି କେବେ   ପୁଣି ଆସିବ,
ନଈନାଳ ଉଚ୍ଛୁଳାଇ   ଦଣ୍ଡଦିଗ ଗ୍ରାସିବ ।
ଥାଏ ସିନା ଆକାଶେ, ମୁଁ   ଜଗତର ଜୀବନ,
ମୋ ବିହୁନେ ଧରା ହେବ   ମରୁଭୂମି ବିଜନ ।

## କଳିକା ଓ କଳାକାର

ସୁନିର୍ମଳ ଆକାଶ   ନାହିଁ ଝଡ଼ ବତାସ
ନାହିଁ ବରଷା ଘନ ଅସରା,
ଫୁଲ୍ ପତର କଳି   ନାଚନ୍ତି ଉଳାଉଳି
ମେଲାଇ ସୁଷମାର ପସରା ।
କଅଁଳ ଖରା ବୁଣି   ହସଇ ଦିନମଣି,
ହସଇ ଉପବନ ଝଟକ,
'ଆହା କି ମନୋହର !   କିଏ ଏ କଳାକାର ?'
ପଥିକ ପଚାରଇ ଅଟକ ।

ପତର ଫୁଲ ଫଳ          ସରବେ କଲେ ଗୋଳ—
'ଆମେ-ସଜାଇଛୁ ଏ ବାଟିକା,'
କଳକା କହେ ଉଚେ          ବଡ଼େଇ କର ମିଛେ,
ତୁମେ ଯେ ତୁଳୀ-ମୁନ ଛୁଟିକା ।
କଳାକାର ତ ଜଣେ          ଜଗତ କଣେ କଣେ
ସଜାଏ ନିତ ଶୋଭା-ବଜାର,
ବିରାଟ ଧରାଧାମେ          କଣିକାଟିଏ ଆମେ,
ବିଭୂତ ସେଇ ବିଶ୍ୱବଜାର ।
ଏତକ ମନେ ଧରି          କରମ ଯିବା କରି
ହସି ହସାଇ ନେବା ମେଳଣି,
ଜଗତ-କରତାର          ନ ବାଜ ତୁଳୀଗାର
କେଉଁ କି କଳାକାର ହେଲଣି ?'

## ଝରଣା

ପାହାଡ଼ରୁ ନାଚ ନାଚ          ଝରଣାଟି ଅଇଲା,
କୁଳୁକୁଳୁ ଗୀତ ଗାଇ          ଆଗେ ଆଗେ ଧାଇଁଲା ;
ସମତଳ ମାଟି ଛୁଇଁ
ଚଉଦିଗେ ଚାହିଁ ଚାହିଁ
ଥକା ମାରି ରହି ରହି          ଧୀରେ ଧୀରେ ବହିଲା,
ପାହାଡ଼ରୁ ନାଚ ନାଚ          ଝରଣାଟି ଅଇଲା ।

'ଏ କି ନୂଆ ରାଇଜକୁ          ଆସିଲି ମୁଁ ଏଥର !
ନାହିଁ ଏଠି ବାଘ ଭାଲୁ          ନାହିଁ ଏଠି ପଥର ;
ପଲ ପଲ ଗୋରୁ ଗାଈ
ହଳ କରେ ଚଷୀ ଭାଇ
ଖରା ପଡ଼ି ଝଟକଇ          ଗଛଲତା ପତର,
ଏ କି ନୂଆ ରାଇଜକୁ          ଆସିଲି ମୁଁ ଏଥର !'

'ଆହା କେଡ଼େ ମନୋହର,    ଆହା କେଡ଼େ ବଢ଼ିଆ !
ଗାଆଁ ବଲ ତୋଟାମାଳ    ଘାସଭରା ପଡ଼ିଆ,
ବାଟେ ଘାଟେ ଦଳଦଳ
ମଣିଷର କୋଳାହଳ
ଧାଡ଼ି ଧାଡ଼ି ଗୁଆ ତାଳ    ଫଳଭରା ନଡ଼ିଆ,
ଆହା କେଡ଼େ ମନୋହର,    ଆହା କେଡ଼େ ବଢ଼ିଆ !'

ଡାଳେ ବସି କପୋତଟି    ପଚାରିଲା ବଣିରେ—
'ଦେଖୁଅଛୁ ମୁହଁ ଯେଉଁ    ଝରଣାର ପାଣିରେ,
କୁହୁକୁହୁ ଗୀତ ଗାଏ
ନ ରହି ସେ ଚାଲିଥାଏ
କାହୁଁ ଆସେ କାହିଁ ଯାଏ    ଅଛୁ ତୁ କି ଜାଣି ରେ ?'
ଡାଳେ ବସି କପୋତଟି    ପଚାରିଲା ବଣିରେ ।

'ପାହାଡ଼ରୁ ଆସିଛି ମୁଁ'    କହିଲା ସେ ଝରଣା,
'କାହିଁ ଯାଉଅଛି ବହି    ନାହିଁ ମୋର ଧାରଣା;
ପିଅ ତୁମେ ଜଳ ମୋର
ନିଅ ଯିଏ ଯେତେ ପାର
ନାହିଁ ମୋର ନିଜ ପର    କେହି ମୋତେ ଡରନା,
ପାହାଡ଼ରୁ ଆସିଛି ମୁଁ'    —କହିଲା ସେ ଝରଣା ।

ପାଇଲା ସେ ଅବଶେଷେ    ନଦୀକୋଳ ପରଶ,
ଭଉଣୀରେ ଭେଟି ହେଲା    ମନ ତାର ହରଷ ;
ଛଳ ଛଳ କଳ କଳ
ବହିଯାଏ ନଦୀଜଳ
ଦୁହେଁ ମିଶି ଧରାତଳ    ମାଟି କଲେ ସରସ,
ପାଇଲା ସେ ଅବଶେଷେ    ନଦୀକୋଳ ପରଶ ।

## ଲାଜକୁଳୀ ଲତା

ଅତି ସୁକୁମାରୀ ତୁ ଲୋ   ଲାଜକୁଳୀ ଲତା,
ଛୁଇଁଦେଲେ କେଡ଼େ ବେଗେ   ନୋଇଁଦେଉ ମଥା !

ଯୋଡ଼ ଯୋଡ଼ ପତର ତୋ   ହୋଇଯାଏ ବୁଜି,
କାହିଁକି ତୁ ଲାଜ କରୁ   ପାରେ ନାହିଁ ବୁଝି ।

ପଳାଇ ତୁ ଆସିଛୁ କି   ପରୀରାଇଜରୁ,
ସେଥିପାଇଁ ଆମ ସାଥେ   ମିଶିବାକୁ ଡରୁ ?

ଅଭିଶାପ ଅବା ତୋତେ   ଦେଇଛି କେ ଋଷି,
ତେଣୁ ଏଇ ଘାସବଣେ   ରହିଛୁ ତୁ ଆସି ?

ଗୋଲ ଗୋଲ ଫୁଲ ତୋର   ତାରାପରି ଦିଶେ,
ଗୋଲାପର ଟିକି ଟିକି   ଫୁଲଝରି କି ସେ !

କଣ୍ଟା ପଛେ ପୂରିଥାଉ   ଦେହଯାକ ତୋର
ନେଇଯିବି ତତେ ଏଠୁ   ବଗିଚାକୁ ମୋର ।

ପଢ଼ିସାରି ଯେତେବେଳେ   ଆସୁଥିବି ବୁଲି,
ତତେ ଛୁଇଁଦେଇ ସବୁ   ଦୁଃଖ ଯିବି ଭୁଲି ।

## ଅଙ୍କୁରର ନିଦ୍ରାଭଙ୍ଗ

ବସୁଧା ଭିତରୁ   ଡାକେ ଶିଶୁ ତରୁ—
ଫିଟାଅ ଦୁଆର ଧୀରେ,
ଟପ ଟପ ଧାର   ବରଷା ଅସାର
ପଡ଼ିଲାଣି ମୋର ଶିରେ ।







ନିବିଡ଼ କଠିନ ତନୁ ଆବରଣ
ଶିଥିଳ ହୋଇଛି ଆଜ,
ଫିଟାଅ ଦୁଆର ଜନନୀ ଗୋ, ମୋର
ନିଦ୍ରା ଯାଇଛି ଭାଜ ।

ଶୁଭେ ନା କି ତୋତେ ଡାକୁଅଛି ମୋତେ
ସମୀରଣ ଥର ଥର ?
ମୋ ଦେହେ ଶୀତଳ ବରଷାର ଜଳ
ପଡ଼ଲାଣି ଝର ଝର ।

ତପନ ମୋ ପାଇଁ ଦେଇଛି ପଠାଇ
ଆଲୋକ-କିରଣ-ଡାଲା,
ଦେଖିବି ଭୁବନେ ଲାଗିଛି କେମନେ
ଜୀବନ-ମରଣ-ପାଲା ।

ମୁକ୍ତ ଜଗତେ ଦେଖିବି ମୁଁ କେତେ
ମନଭୁଲାଣିଆ ଛବି,
ପଶୁ, ପକ୍ଷୀ, ନର, ନଦୀ, ସରୋବର,
ନଭେ ତାରା, ଶଶୀ, ରବି ।

ଦିନୁ ଦିନ ମୋର ବଢ଼ିବ ଆକାର
ରସ ନେଇ ତୋର ଧରୁ,
ରୂପେ ଗୁଣେ ମୋହି କୋଳ ତୋର ଶୋହି
ହୋଇବି ବିରାଟ ତରୁ ।

ସବୁଜ ପତର, ଫୁଲ ଫଳ ମୋର
ଲାଗିବ ଜଗତହିତେ,
ମୋ ଲାଗି ନୀରବ ଆକାଶ ପୂରିବ
ବିହଗର କଳଗୀତେ ।





ଆହାର ଯୋଗାଇ ଶୀତ ଗ୍ରୀଷ୍ମ ଦେଇ
ତୋଷିବ ସକଳ ଜୀବେ,
କ୍ଷୀର, ପରାଣ କରିଦେବ ଦାନ
ମାନବ ଲୋଡ଼ିବ ଯେବେ ।
ଖରାତରା ସହି ଗାଉଥିବ ମୁହିଁ
ଜୀବନର ମହାଗୀତ—
'ସେବା ଉପକାର ଧରାତଳେ ସାର
ସେବାହିଁ ପରମ ମିତ ।'

## ସେଇଠାକୁ ଚାଲ

ସେଇଠାକୁ ଚାଲ ଭାଇ ସେଇଠାକୁ ଚାଲ,
ପବନରେ ଦୋଳେ ଯହିଁ କନିଅର ଫୁଲ ।
ଫୁଲ ଧୂଳି ଦେହେ ବୋଳି ବସି ଚାରି କୋଳେ
ମହୁମାଛି ଗୁଣୁଗୁଣୁ ଗାଉଥାଏ ମେଳେ ।
ପାଣିକୂଳେ ଏକଲୟେ ଗୋଡ଼ଟିକୁ ଟେକି
ମାଛ ଧରିବାକୁ ବଗ ରହିଥାଏ ଟାକି ।
ନୀଳ କଇଁ ଲୁଚି ଯହିଁ ଡାଳୁଥାଏ ବାସ
ସେଇଠାକୁ ଥରେ ଭାଇ ବୁଲିଯିବା ଆସ ।
ସରୁ ସରୁ ଗଛ ଡାଳେ ସରୁ ସୂତା ଟାଣି
ଘୁଇତଳେ ଆଡ଼ୁଆଳେ ଲୁଚି ବୁଢ଼ିଆଣୀ
ମାଛି ଧରିବାକୁ ଯହିଁ ବୁଣୁଥାଏ ଜାଲ,
ସେଇଠାକୁ ଚାଲ ଭାଇ ସେଇଠାକୁ ଚାଲ ।
ବିଲ ବଣେ ପଡ଼ିଥାଏ କଅଁଳିଆ ଖରା
ପଡ଼ିଆରେ ଥାଏ ଯହିଁ କୋଳିଗଛ ଭରା,
ନାଚି ନାଚି ପ୍ରଜାପତି ଉଡ଼ୁଥାଏ ଖରେ
ସେଇଠାକୁ ବୁଲିଯିବା ଆସ ଭାଇ ଥରେ ।

ଏଠାରେ ଲଗିଛି ଖାଲି ମଣିଷର ଖେଳ,
ଆଉ କିଛି ଦେଖିବାକୁ ନାହିଁ ଟିକେ ବେଳ ।
ଆସ ଯାଇ ସେଇଠାକୁ ଯିବା ଥରେ ବୁଲି,
ମଣିଷର କୋଳାହଳ ଯିବା ଯହିଁ ଭୁଲି ।

## ଚିତ୍ରକର

ସୁଦୂର ନୀଳ ଗଗନେ ଅଛି ଚିତ୍ରକର ଜଣେ
କେହି ଦେଖିନାହିଁ କେବେ ରୂପ ତାହାର,
ବେନି ହସ୍ତେ ଘେନି ତୂଳି ଶୀତରାଣୀ ସଙ୍ଗେ ମିଳି
ରଜନୀ-ତିମିରେ ସେହି ହୁଏ ବାହାର ।
ଧରାତଳ ଚିତ୍ରିବା ପାଇଁ
ନିତି ନିଶି-ନିଶବ୍ଦେ ଆସେ ଓହ୍ଲାଇ ।

ପ୍ରଭାତେ ମୁଁ ଦେଖେ ଚାହିଁ ଚିତ୍ରକର କେହି ନାହିଁ
ଚିତ୍ରଭୂଷା କେବଳ ରହିଛି ତାର,
ଶ୍ୟାମଳ ପତ୍ରମାନେ କୋମଳ କୁସୁମ କୋଳେ
ଖଞ୍ଜି ଦେଇଛି ସେ କେତେ ମୁକ୍ତାହାର,
ଦୂବଘାସ ପତ୍ର ଗଣି
ଖଚିଛି କୋଟିଏ ହୀରା ମୁକୁତା ମଣି ।

ବୁଢ଼ିଆଣୀ ଜାଲ ଭରି ରହିଛି ମୁକ୍ତାସରି
ଯହିଁ ମୁଁ ଅନାଏଁ ଦେଖେ ହୀରକ ଝଲେ,
ଏକାଳେ ଆସଇ ରବି ଦେଖେ ଏ ଝଟକ ଛବି
ବକ୍ଷରେ ହୀରକହାର ପିନ୍ଧିବ ଗଲେ,
ସହସ୍ର କିରଣ ପଠାଇ
କୋଟି କୋଟି ହୀରାବିନ୍ଦୁ ନିଏ ଗୋଟାଇ ।



# ମାଟିମାଥା

## ମୋ ଗାଆଁ

ନୀଳ ଆକାଶରେ ଧଳା ବଉଦର ଖେଳ,
ଘାସ ପଡ଼ିଆରେ ଗୋରୁ ଗାଈଙ୍କର ମେଳ;
ତରୁଲତା ଡାଳେ ହସଇ ସୁନେଲି ଖରା,
ଗାଆଁଟି ମୋହର ସକଳ ଶୋଭାରେ ଭରା ।

ନଈ ବହିଯାଏ କୁଡ଼ୁ କୁଡ଼ୁ ଗୀତ ଗାଇ,
ପକ୍ଷୀ ଖୋଜୁଥାଏ ଗହଳ ଗଛର ଛାଇ;
ହସ ହସ ମୁଖେ ଖେଳୁଥାନ୍ତି ପୁଅ ଝିଅ,
ସେହି ମୋ ଗାଆଁଟି ସବୁଠାରୁ ବଳି ପ୍ରିୟ ।

ଶୀତଳ ପବନ ଖିଲଖିଲି ବହି ଆସେ,
କାକର ଝଟକେ ଝିଲମିଲି ଦୁବଘାସେ;
ପୋଖରୀରେ କେତେ ଫୁଟିଥାଏ କଇଁଫୁଲ,
କି ସୁନ୍ଦର ଆହା ! କିଏ ଦେବ ତାର ମୁଲ ?

ବାପ ମାଆ କୋଳେ କାଟିଛି ସେଇଠି ଦିନ,
ଭୁଲି ପାରିବିନି ହେଉ ପଛେ ତାହା ସାନ;
ବଢ଼ାଇଛି ମୋତେ ତାହାରି ପବନ ପାଣି,
ଗାଆଁଟି ମୋହର ସାରା ଜଗତର ରାଣୀ ।

# ମୋ ଗାଆଁ

ଗାଆଁ ପାଠ ଶେଷେ ବାପାଙ୍କ ଆଦେଶେ
ଅଧିକ ପଢ଼ିବା ପାଇଁ
କଟକ ଯିବାର ହୋଇବାରୁ ସ୍ଥିର
ନ ଲଗିଲା ମନ କାହିଁ ।
ସହରକୁ ଯିବ, ଆହୁର ପଢ଼ିବ,
ଭାବଲ, 'ଏ କେଡ଼େ କଥା !'
ମନ ମୋ ଅଥୟ ହେଲା ଅତଶୟ
ଗାଆଁ ଟା ଲଗିଲା ପିଚା ।
ଦେଖି ଶୁଭ ବେଳ କର ଅନୁକୂଳ
ଛାଡ଼ଲ ଜନମଭୂଇଁ,
କଟକ ସହର କେଡ଼େ ମନୋହର
ବାଟେ ଭାବୁଥାଏ ମୁହିଁ ।
ବଡ଼ ଇସ୍କୁଲରେ ନାମଲେଖା ପରେ
ପଢ଼ିଲ ଲଗାଇ ମନ,
ନୂଆ ସାଥୀମେଳେ ହସ ଖୁସି ଖେଳେ
କଟିଗଲା ମୋର ଦିନ ।
ବୁଲିଲ ଆନନ୍ଦେ କାଠଯୋଡ଼ି ବନ୍ଧେ
ଦେଖି କେତେ କୋଠାବାଡ଼ି,
କଳ କାରଖାନା, ରେଡିଓ, ସିନେମା,
ମଟର ଧାଡ଼ିକି ଧାଡ଼ି ।
ଯେତେ ରାସ୍ତା ଗଲି ସବୁଠି ଗହଳି
ନୂଆ ଲୋକ ହେବ ବଣା,
ଦୋକାନ ବଜାର କେତେ ପରକାର
ସବୁଠାରେ ବିକାକିଣା ।

କଟକ ଦେଖିଲି                    ଅଧିକ ଶିଖିଲି
କେଜାଣି କାହିଁକି ପୁଣି,
ଘର ମନେ ପଡ଼ି                    ସୁଖ ଗଲା ଛାଡ଼ି
ଘର କଥା ହେଲି ଗୁଣି ।

ପାଖ ହେଲା ଛୁଟି,                    ଲେଖିଦେଲି ଚିଠି,
ବାପା ଦେଲେ ଅନୁମତି,
ଘରମୁହାଁ ହୋଇ                    ବାହାରିଲି ମୁହିଁ
ମନରେ ହରଷ ଅତି ।

ଗାଆଁ ମୁଣ୍ଡ ବଟ                    ହୋଇଲା ନିକଟ
ପ୍ରାଣ ହେଲା ପୁଲକିତ,
ଭାବିଲି ଏ ଭୂଇଁ                    ଧନ୍ୟ ହେଲି ଛୁଇଁ
ଏ ମୋ ଚିର ପରିଚିତ ।

ଏଇ ଗଛମୂଳେ                    ଝଡ଼ ବାଆ ବେଳେ
ଆମ୍ବ ଗୋଟାଇବା ସୁଖ,
ଏ କୁଟୀର ତଳେ                    ବସି ମାଆ କୋଳେ
ଭୁଲିଛି ସକଳ ଦୁଃଖ ।

ଏହି ନଦୀ ତଟେ                    ଏଇ ଛୋଟା ବାଟେ
ଶଇଶବ ସାଥୀ ମେଳେ,
ଭୁଲି ଭୋକ ଶୋଷ                    କେତେ ଯେ ଦିବସ
କାଟିଅଛି ବାଲଖେଳେ ।

ସହର ବଜାର                    କୋଠାଘର ଛାର
ଏ ସୁଖ ଦେବ ସେ କାହିଁ !
ମୋ ଜନମ ମାଟି                    ଏ ପଡ଼ା ଗାଆଁ ଟି
ତୁଳନା ଏହାର ନାହିଁ ।









# ଓଡ଼ିଶା ମୋର ଦେଶ

ଓଡ଼ିଆ ମୁହିଁ  ଓଡ଼ିଆ ମୁହିଁ  ଓଡ଼ିଶା ମୋର ଦେଶ,
ଏହି ଦେଶରେ  ଜନମ ମୋର  ଏହି ଦେଶରେ ବାସ ।

ଧନ ନ ଥିଲେ  ଭାବନା ନାହିଁ  ମନରେ ଅଛି ବଳ,
ମନର ବଳେ  କରିପାରେ ମୁଁ  ଦୁନିଆଁ ଟଳମଳ ।

ଆମ ଦେଶରେ  ମହାନଦୀଟି  ସାଗର ସଙ୍ଗେ ମିଶେ,
ଗଡ଼ଜାତର  ପାହାଡ଼ମାଳା  ପାଚେରି ପରି ଦିଶେ ।

ଏହି ଦେଶର  ବଡ଼ ଦେଉଳେ  ଜଗନ୍ନାଥ ବିଜେ,
ଏହି ଦେଶର  କୀରତିମାଳା  ତିନିଜଗରେ ସାଜେ ।

ଓଡ଼ିଶା ଦେଶ  ଗଛ ପଥର  ଓଡ଼ିଶା ଦେଶ ମାଟି,
ଓଡ଼ିଆ ଘର  ଘାଟ ତୁଠଣ  ଓଡ଼ିଆ ପିଲା ପାଟି,

କେଡ଼େ ମଧୁର  କି ମନୋହର  ଆମରି ଦେଶ କଥା,
ଆମରି ଫଳ,  ଆମରି ଫୁଲ,  ଆମରି ତରୁଲତା ।

ଏହି ଦେଶରେ  ଚିଲିକା ହ୍ରଦ,  ଭୁବନେଶ୍ୱର, ପୁରୀ,
କୋଣାର୍କର  ଦେଉଳ ଦେଖି  ଫେରନ୍ତି ଲୋକେ ଝୁରି ।

ଓଡ଼ିଶା ଆମ  ଜନମଭୂମି  ହୋଇଛି ଆଜ ହୀନ,
ଆମେ ଆଣିବୁ  ଫେରାଇ ତାର  ସୁଖଶିରୀର ଦିନ ।

ଏଇ ଦେଶର  ପାଣିପବନେ  ଶରୀର ହେଲା ଗଢ଼ା,
ଏଇ ଦେଶର  ଚାଟଶାଳୀରେ  ଶିଖିଲୁ ପାଠପଢ଼ା ।

ଏଇ ଦେଶର  ସେବାରେ ଆମ ଜୀବନ ହେଉ ଶେଷ,
ଓଡ଼ିଆ ଆମେ  ଓଡ଼ିଆ ଆମେ  ଓଡ଼ିଶା ଆମ ଦେଶ ।



# ଏହି ମୋ ଜନମଭୂଇଁ

ଏହି ମୋ ଜନମଭୂଇଁ,
ଜନନୀ-ଜଠରୁ     ପହିଲେ ପଡ଼ିଲି
ଏହି ଦେଶ ମାଟି ଛୁଇଁ ।
ଏହି ଉତ୍କଳର ପାଣି, ପବନ
ଏ ଦେଶର ଜଳ, ପାହାଡ଼, ବନ,
ଏ ଦେଶ ଦରବ     ସବୁ ମୋର ପ୍ରିୟ
ଏ ଦେଶେ ବଢ଼ିଛି ମୁହିଁ,
ଏହି ମୋ ଜନମଭୂଇଁ ।

ଏ ଭୂମି ମହିମା-ପୁଷ୍ଟ,
ବନେ ଗିରିଖୋଲେ     ଯତନେ ରହିଛି
ଅତୀତର କାରିଗରୀ ।
ଶିଳା ଦେହେ ସ୍ମୃତି କାରୁକଳା
ଦେଉଳେ ଦେଉଳେ ହୋଇଛି ଖୋଳା,
ବାରବାଟୀ ଚୂଳେ     ବାଜୁଥିଲା ଢନେ
ଏ ଦେଶର ଜୟଭେରୀ,
ଏ ଭୂମି ମହିମା-ପୁଷ୍ଟ ।

କହି ନୁହେଁ ତାର ଶୋଭା,
ଜଳବନମାଳେ     ଶ୍ୟାମଳ ସୁଷମା
ଆହା କେଡ଼େ ମନଲୋଭା !
କେତେ ଗିରିନଦୀ ଉଚ୍ଛୁଳି ଖେଳ
ଫୁଲଫଳେ ଭରି ଜନନୀକୋଳ,
ସାଗର ଲହରୀ     ଧୁଏ ତା ଚରଣ
ବଉଳ ସଜାଏ ଗଭା,
କହି ନୁହେଁ ତାର ଶୋଭା ।

କେହି କି ପାରିବ ଭୁଲି
ଏ ଦେଶର ପୁଅ ଧରମା ବଢ଼ିକେ
ମାଇଲା ଦେଉଳ ଚୂଳି !

ଏ ଦେଶ ବାଳକ ବାଜି ରାଉତ
ଫଉଜ ଆଗରେ ନୋହିଲା ଭୀତ,
ଦେଶ ଲାଗି ଦିନେ ବୀରପରି ହସି
ଖାଇଲା କପରି ଗୁଳି,
କେହି କି ପାରିବ ଭୁଲି !

ଏ ଦେଶେ ଜନମ ଲଭି
ଲେଖିଗଲେ ଗୀତ ସରସ, ଲଳିତ
ମଧୁ, ରାଧାନାଥ କବି ।

ପଠାଣି ସାମନ୍ତ ଗଣିଲେ ତାରା,
'ମଧୁବାବୁ' ନାମେ ଡରିଲେ ଗୋରା,
ଗୋପବନ୍ଧୁ ଆମ ଆଗେ ଥୋଇଗଲେ
ସେବା ଧରମର ଛବି,
ଏ ଦେଶେ ଜନମ ଲଭି ।

ତାଙ୍କରି ରକତ ଧାର,
ବହୁଛି ଏ ଦେହେ, ଡରିବ କି ଦେଖି
ବିପଦ ଅଶିବ ଘୋର ?

କରିବି ଜୀବନେ ଏ ଭଳି କାମ,
ଟେକ ରହିବ ମୋ ଜାତିର ନାମ
ଜନନୀ ଗଳାରେ ପିନ୍ଧାଇଦେବି ମୁଁ
କୀରତି-କୁସୁମ-ହାର,
ଜଗତେ ହେବ ସେ ସାର ।

# ଭାରତମାତା

ଭାରତ ଜନମଭୂମି ଅଟେ ମୋର ମାଆ,
ପୁଣ୍ୟ ତାର ମାଟି, ପାଣି, ପୁଣ୍ୟ ତାର ବାଆ ।
ମୋ ଦେଶ ନାଆଁ ଟି ମୋତେ ଲାଗେ ସୁମଧୁର,
ମୋ ଦେଶ ଶୋଭା ଦେଖିଲେ ଦୁଃଖ ହୁଏ ଦୂର ।
ଏ ଦେଶେ ରହିଛି କେତେ ବନ ପରବତ,
ସୁନ୍ଦର ସବୁଜ ଶସ୍ୟ କ୍ଷେତ ଶତ ଶତ ।
ଏ ଦେଶ ଆକାଶେ ଭାସେ ଧଳା ମେଘମାଳ,
କୁଳୁ କୁଳୁ ବହିଯାଏ କେତେ ନଈ ନାଳ,
ଏତେ ଶୋଭା ଧରିଅଛି ଯେ ଭାରତଭୂଇଁ,
ତା କୋଳେ ଜନମି ମଣେ ଭାଗ୍ୟବାନ ମୁହିଁ ।
ଭାରତର ଶୋଭାରାଶି ଜଗତରେ ସାର
ତା ଚରଣେ କରେ ମୁହିଁ କୋଟି ନମସ୍କାର ।

ଯେତେ ଜାତି ଲୋକ ମାଆ ଧରିଅଛି କୋଳେ,
ସକଳେ ଭାଇ ଭଉଣୀ ମନେ ମନେ ଭାଳେ ।
ସବୁରି ସାଥିରେ ମିଶି କରିଯିବି କାମ,
ଜଗତରେ ଧନ୍ୟ ହେବ ମୋ ମାଆର ନାମ ।
ମୋ ଦେଶ ମାଟିରେ ମୁହିଁ ଫଳାଇବି ସୁନା,
ଅନ୍ୟାୟ ଅସତ୍ୟ ମୁଣ୍ଡ କରିବି ମୁଁ ଚୂନା ।
ଭଗାରିଙ୍କୁ ସ୍ନେହବଳେ କରି ଆପଣାର
ଜଗତରେ ବଢ଼ାଇବି ଟେକ ଭାରତର ।
ହିନ୍ଦୁ, ମୁସଲମାନ, ବୌଦ୍ଧ, ଖ୍ରୀଷ୍ଟିୟାନ ଆଦି
ସକଳେ ଭାରତବାସୀ ଏକ ହେବେ ଯଦି,

ଏ ଦେଶରୁ ଘୁଞ୍ଚିବ ଦୁଃଖ, ଭୟ, ଦକା,
ଶିଖାଇଛୁ ଏହା ମୋତେ ତ୍ରିରଙ୍ଗ ପତାକା ।

ସେ ପତାକା ପାଇଁ ଦେଇପାରେ ରକ୍ତଧାର,
ତ୍ରିରଙ୍ଗ ପତାକା ! ତୋତେ କରେ ନମସ୍କାର ।

## ଏଇ ଆମ ଦେଶ ରେ

ଏଇ ଆମ ଦେଶ ରେ
କେତେ ପୁଅ ଝିଅ ତାର    କେତେ ଭଲ ବେଶ ରେ ।

ବିଲ ବଣ ତରୁ ଲତା ମନ ନିଏ ଭୁଲାଇ
ଝୁଲୁ ଝୁଲୁ ବାଆ ଦିଏ ଫୁଲଡାଳ ହଲାଇ
କୁହୁ କୁହୁ ଗୀତ ଗାଇ
ଝରଣା ତା ଯାଏ ବହି
ନୀଳ ଦରିଆରେ ମିଶି    ହୋଇଯାଏ ଶେଷ ରେ
ଏଇ ଆମ ଦେଶ ରେ ।

ଏ ଦେଶର ମୂଲିଆ
ଧନସାରା ଖଟି ଖଟି    ହୁଏ ନାହିଁ ହାଲିଆ ।

କଳ ଘରେ କାରିଗର ଗଢ଼େ କେତେ ଦରବ
ଅଳପରେ ଖୁସି ରହେ, କରେ ନାହିଁ ଗରବ,
ମୋ ଦେଶର କୃଷୀ ଭାଇ
ଭୋକ ଶୋଷ ଜାଣେ ନାହିଁ
ବରଜାତି ଫସଲ ସେ    କରେ ବାର ମାସରେ,
ଏଇ ଆମ ଦେଶ ରେ ।

ମୋ ଦେଶର ବଣିକ
ବୋଇତ ବେପାର କରି          ଆଣୁଥିଲା ମାଣିକ ।

ସେଇ ଶୁଭ ଦିନ ପୁଣି ଆସିଅଛି ଫେରି ରେ
ଆମ ଉପକୂଳେ ଶୁଭେ ମଙ୍ଗଳ ଭେରି ରେ ।
ଆସ ପୁଅ ଝିଏ ଉଠି
ପଛକୁ ନ ଚାହିଁ ଦିଠି—
ଆମେ କାମ କଲେ ସିନା          ଆଗେଇବ ଦେଶ ରେ
ଆସ ଭାଇ ଆସ ରେ ।

ଆମେ ନୋହୁ ସାନ ରେ
ଆକାଶକୁ ଉଡ଼ିଯିବୁ          ମହାକାଶଯାନରେ ।
ଅତଳ ସାଗରେ ବୁଡ଼ି ଗୋଟାଇବୁ ମୁକୁତା
ବଇରି ସାଥିରେ ଲଢ଼ି ଫଟାଇବୁ ବୁକୁ ତା',
ମାଆର ମହତ ରଖି
ଅନାଥର ସେବା ଶିଖି
ଭରିଦେବୁ ଘରେ ଘରେ          ମନଖୋଲା ହସ ରେ
ଏଇ ଆମ ଦେଶ ରେ ।

ବାପ ଅଜା ଆମର
ବଡ଼ କାମ କରି ଆଜି          ଦୁନିଆରେ ଅମର ।
ବହୁଅଛି ଆମ ଦେହେ ତାଙ୍କରି ରକତ
ମନରେ ସାହସ ଅଛି, ଦେହେ ଅଛି ତାକତ ।
ନୂଆ ଯୁଗ ପାଠ ପଢ଼ି
ସୁନାର ଭାରତ ଗଢ଼ି
ଜଗତରେ ରଖିଯିବା          ଏ ଦେଶର ଯଶ ରେ
ଆସ ଭାଇ ଆସ ରେ
ଏଇ ଆମ ଦେଶ ରେ ।




# ଆହେ ଦୟାମୟ ବିଶ୍ୱବିହାରୀ

ଆହେ ଦୟାମୟ ବିଶ୍ୱବିହାରୀ !
ଘେନ ଦୟା ବହି ମୋର ଗୁହାରି ।

ଜଳ, ସ୍ଥଳ, ବନ, ଗିରି, ଆକାଶ,
ତୁମ ଲୀଳା ସବୁଠାରେ ପ୍ରକାଶ ।

ତୁମେ ଶୁଭ ବୁଦ୍ଧି ପରା ଶିଖାଅ,
ତୁମେ ଭଲ ବାଟ ପରା ଦେଖାଅ ।

ମୋର କାମକୁ କରାଅ ସରସ,
ମୋର ମୁଖେ ଦିଅ ଚିର ହରଷ ।

ତୁମ ଚରଣରେ ମୋର ଭକତି,-
ଦିଅ ବିପଦେ ସାହସ ଶକତି ।

କୁଟି କପଟ ସ୍ୱଭାବ ଯାହାର,
ତାଙ୍କୁ ଦୂରୁଁ ମୁଁ କରଇ ଜୁହାର ।

ମୋତେ ନ ମିଶାଅ ତାଙ୍କ ସାଥିରେ,
ସଦା ରଖ ସାଧୁଜନ କଣ୍ଠରେ ।

ଦୟା ବିନୟ ହେଉ ମୋ ଭୂଷଣ,
କାହା ମନେ ନ ଦିଏଁ ମୁଁ କଷଣ ।

ଦୁଃଖୀ   ଅରକ୍ଷିତ ସେବା କାରଣେ,
ବଳ   ଦିଅ ମୋର କରଚରଣେ ।

ସତ   କହିବାକୁ କିଆଁ ଡରିବ ?
ସତ   କହି ପଛେ ମଲେ ମରିବ ।

ମୋତେ   ଏତିକ ଶିଖାଅ ସାଇଁ ହେ,
ମୋର   ଧନ ଜନ ଲୋଡ଼ା ନାହିଁ ହେ ।

## ଧନ୍ୟ ହେ ଈଶ୍ୱର

ଧନ୍ୟ ହେ ଈଶ୍ୱର ! ତୁମ ବୁଦ୍ଧି କଉଶଳ,
କେମନ୍ତେ ଗଢ଼ିଲ ମେଘ, ବାୟୁ, ଜଳ, ସ୍ଥଳ ।
କିପରି ରଚିଲ ପ୍ରଭୁ ବରଷାର ଧାରା,
ଆକାଶରେ ଖଞ୍ଜିଦେଲ କୋଟି କୋଟି ତାରା ।
ପ୍ରଜାପତି ଦେହେ ଦେଲ ଟୋପି ଟୋପି ଚିତା,
ବୁଢ଼ୀଆଣି ପେଟ ତଳେ କେତେ ସରୁ ସୂତା ।
ଫୁଲ ପାଖୁଡ଼ାରେ ଦେଲ ମଧୁର ମହକ,
ଜହ୍ନମାମୁ ରୂପ କଲ କେଡ଼େ ଜକଜକ ।
ଆଖୁ ଗଛେ ଭରିଦେଲ କେତେ ମିଠାରସ,
କଅଁଳା ପିଲାକୁ ତୁମେ ଶିଖାଇଲ ହସ ।
ସଜାଇଲ କେତେ ଫୁଲ, ଫଳ କେତେ ଭଳି,
ସପୁରୀ, ନଡ଼ିଆ, ଆମ୍ବ, ପଣସ, କଦଳୀ ।
ନାଲି, ନେଳି ହଳଦିଆ ରଙ୍ଗମାନ ବାଛି,
ହାତୀଠାରୁ ଗଢ଼ିଗଲ ଟିକି ଟିକି ମାଛି ।
ହଳଦୀବସନ୍ତ କଲ ହଳଦିଆ କରି,
କଜଳପାତି ଦେହରେ କଳା ଦେଲ ଭରି ।

ପାଣିରେ ରଖିଲ ମାଛ ଶୂନ୍ୟରେ ଚଢ଼େଇ,
ଭଲ ଭଲ ଜୀବ ରଖିଦେଲ ସବୁଠାଇଁ ।
ଆଲୁଅ, ଅନ୍ଧାର ପୁଣି ସରସ, ନୀରସ,
ସବୁ ତୁମ ଖେଳ ଆହେ ବିଧାତାପୁରୁଷ ।

## ଆମକୁ ଭଲ ମଣିଷ କର

ବେଳ ବୁଡ଼ିଲା ସନ୍ଧ୍ୟା ହେଲା
ଘରଘରକେ ଜଳିଲା ବତୀ,
ଆସରେ ଧାଇଁ ଭଉଣୀ ଭାଇ
ଡାକିବା ମିଳି ଜଗତପତି ।

"ଜଗତନାଥ, ଯୋଡ଼ୁଛୁ ହାତ
ମାଗୁଛୁ ଆମେ ଗୋଟିଏ ବର—
ଏତିକି ଦିଅ ଆଉ ନ ଦିଅ
ଆମକୁ ଭଲ ମଣିଷ କର ।

ତୁମ ସଇଜ ତୁମେ ହିଁ ବୁଝ
ବଡ଼ରୁ ସାନ ସକଳ କଥା,
ଧୂଳିର ପୋକ ଶୂନ୍ୟ ଲୋକ
କେମିତି ବୁଝି କେ କହିବ ତା ।

ଆସଇ ରାତି ଲାଗଇ ଭୀତି
ଅନ୍ଧକାରେ ଲୁଚଇ ଧରା,
ସେତିକିବେଳେ ଆକାଶ କୋଳେ
ଜଳାଇଦିଅ କୋଟିଏ ତାରା ।

ଗଛ ପତରେ    କାକର ଝରେ
ଫୁଟଇ ଜାଈଜାଈକା ଫୁଲ
ରୂପ ଝଲକେ    ହସ ମହକେ
ଏ ଧରା ବୁକେ କାହିଁ ତା ମୂଲ!

ରାତି ଅଧରେ    ଜନବଦନରେ
ବସାଅ ଏହି ଶୋଭାର ହାଟ,
ନ ଜାଣେ କେହି    କେଉଁଠି ରହି
ଦେଖାଅ ଏହି ହାଟରମଟ ।

ରାତି ପାହିବ    ସକାଳ ହେବ
ସୂର୍ଯ୍ୟ ଦେବେ ସୁନେଲି ଖରା,
ଲାଗିବ ଗୋଳ    ଜୀବନ ଖେଳ
ଜାଗି ଉଠିବ ପୁଣି ଏ ଧରା ।

ଦେହେ ଆମର    ଶକତି ଭରି
ମନରେ ଦେଇ ସାହସ ବଳ,
କାମ ଖେଳରେ    ସାଥିମେଳରେ
ଚଳାଅ ଆମ ଜୀବନ-କଳ ।

ଜଗତନାଥ    ଯୋଡ଼ୁଛୁ ହାତ
ମାଗୁଛୁ ଆମେ ଗୋଟିଏ ବର,
ଏତିକ ଦିଅ    ଆଉ ନ ଦିଅ
ଆମକୁ ଭଲ ମଣିଷ କର ।"

# ଧୂପକାଠି

## କାମରେ ଲଗାଅ ମନ

ଆସ ଆସ ଭାଇ ଗୀତ ଗାଇ ଗାଇ
କାମରେ ଲଗାଅ ମନ,
ଅଳସୁଆ ହୋଇ ବସି ରହିଥିଲେ
ସରିଯିବ ଘରୁ ଧନ ।

ଧନ ସରିଗଲେ କପରି ଚଳିବ
କେଉଁଠୁ ପାଇବ ଭାତ ?
ଭାତ ନ ମିଳିଲେ ଭୋକ ଉପାସରେ
ରହିଯିବ ଗୋଡ଼ ହାତ ।

ଲୁଗା ଚିରିଗଲେ ନୂଆ ଲୁଗା ଖଣ୍ଡେ
କ ଦେଇ କିଣିବ ଭାଇ ?
ଝଡ଼ ବରଷାରେ ଘର ଭାଙ୍ଗିଗଲେ
କେଉଁଠି ରହିବ ଯାଇ ?

ଦୁଆରେ ଦୁଆରେ ଭିକ ମାଗିବାଟା
କେଡ଼େ ନକୁଛିଆ ହେଜ,
ପର ପାଖେ ଯାଇ ହାତ ପତାଇବା
ସବୁଠାରୁ ବଡ଼ ଲାଜ ।

ପୋକ, ଜୋକ, ଉଇ    ମହୁମାଛି ଘର
ଆମଠାରୁ କେତେ ସାନ,
ଭିକ ନ ମାଗି ସେ    କାମ କରି କରି
ସୁଖେ କାଟୁଛନ୍ତି ଦିନ ।
ତୁମର ତ ପୁଣି    ହାତ ଗୋଡ଼ ଅଛି,
ବୁଦ୍ଧି ତାଙ୍କଠାରୁ ଶିଖ,
କାମରେ ଲଗିଲେ    ଦୁଃଖ ହେବ ଦୁର
କାହିଁକି ମାଗିବ ଭିକ ?

## ସମୟ

ସମୟ ଅଟଇ ସମ୍ପଦ ସାର,
ଜୀବନ ଅଟଇ ପାଣିରେ ଗାର ।

ଆଜି କଥା କାଲି ଅନ୍ତର ଯାଇ,
ଗଲା ବେଳ ଆଉ ଫେରିବ ନାହିଁ ।

ଏ କଥା ସୁମରି ଅଳସ ତେଜ,
କି କରିବ କାଲି, ଆଜହିଁ ହେଜ ।

ଦିନ ରାତି ମାସ ବରଷ ଦେଖ,
ଚାଲି ଯାଉଅଛି ଏକକୁ ଏକ ।

ପହଣ୍ତେ ହୁଡ଼ିଲେ ବୁଡ଼ିବ ଭେଳା,
ଉଠିଆସ ବେଗେ ନ କରି ହେଳା ।

ବିଭୁ ବିନା ଆନେ ନ ବନ୍ଧ ଚିତ୍ତ,
ନୂଆ ନୂଆ କାମ କରି ଯା ନିତ ।

# କର୍ମ-ଗୀତିକା

ଜୀବନେ ଯେବେ ବାବୁ ଲଭିବ ଯଶ,
କରମେ ଲାଗିପଡ଼ ତେଜି ଅଳସ ।
　　　　କେତେ କାମ ରହିଛି ତୁମରି ପାଇଁ,
　　　　ବାଳକ ବାଳିକାଏ ଆସ ହେ ଧାଇଁ ।
ସୁସ୍ଥ ଶରୀରେ କର ସଞ୍ଚିତ ବଳ,
ବିଦ୍ୟାବୁଦ୍ଧିରେ ମନ କର ଉଜ୍ଜ୍ୱଳ ।
　　　　ଶରୀର, ମନ ରଖ ପ୍ରଫୁଲ୍ଲ ସଦା,
　　　　ତେବେ ଯିବା ଜିଣିବ ସକଳ ବାଧା ।
କୃଷି, ବାଣିଜ୍ୟ, ଦେଶ ଦଶର କାମ,
ସବୁଁରେ ଅରଜିବ ଅମର ନାମ,
　　　　ଆଜହୁଁ ବାଛିନିଅ ଯେ ଯାହା ମତେ,
　　　　ଅସାଧ୍ୟ ହୋଇ କିଛି ନାହିଁ ଜଗତେ ।
'ପାରିବ ନାହିଁ' କଥା ଧରନା ମୁଖେ,
'ହାରିଲ' ବୋଲି ଫେରି ନ ଯାଅ ଦୁଃଖେ ।
　　　　କଷ୍ଟେ ଜିଣିବ କଲେ ଥରକୁ ଥର,
　　　　ଧୀର ପାଣି ଯେସନେ କାଟେ ପଥର ।
ଏକା ଦିନକେ କେହି ହୁଏ କି ବଡ଼ ?
ଏକା ହୋଇ କି କେହି ଜିଣିଛି ଗଡ଼ ?
　　　　ଯେଝା କରମେ ଲାଗ ଦିବସ-ରାତି,
　　　　ସରବେ ମନ ଦେଲେ ଉଠିବ ଜାତି ।
ଶିଖ ନିଜ ଗୋଡ଼ରେ ହେବାକୁ ଠିଆ,
ପର ବଦନେ ଚାହିଁ ରହିଛ କିଆଁ ?
　　　　ଦେବ-ଶକତି ତୁମ ଶରୀରେ ଭରା,
　　　　ବିଭୁ-କରୁଣା ଲଭି ଜିଣ ଏ ଧରା ।

## ସନ୍ତୋଷ

ଗୋରୁଗାଈ, କୋଠାବାଡ଼ି, କାଞ୍ଚନ,
ଗଜ ବାଜ ଆଦି ଯେତେକ ଧନ
ସାର ବୋଲି ଏହି ସଂସାରେ ଗଣି,
ସନ୍ତୋଷ-ଧନକୁ କେ ପାରେ ଜିଣି ?
ଅମାପ ସମ୍ପଦ ଭଣ୍ଡାରେ ଭରି
ଲୋଭେ ରାଜା ଖୋଜେ ଧନ ଆହୁରି ।
ଦିନ ରାତି ସେହି ଭାବନା ମନେ,
କାହିଁ ସୁଖ ଶାନ୍ତି ତାର ଜୀବନେ ?
ସନ୍ତୋଷ-ରତନ ଅଛି ଯା ପାଖେ,
ଦରିଦ୍ର ହେଲେ ହେଁ ମହାସୁଖୀ ସେ ।
ସନ୍ତୋଷ ଅଟଇ ସୁଖର ମୂଳ,
ସନ୍ତୋଷ ବିହୁନେ ସବୁ ବିଫଳ ।

## ଯଶ

ମହମାୟୁ ରାଜପଦ          ଅତୁଳ ରାଜସମ୍ପଦ
ମଣିମୟ ସିଂହାସନ ନୁହଇ ଚିର,
ଯଶ ଏକା ଚିରସ୍ଥାୟୀ,          ତେଣୁ ହେ ବାଳକ ଭାଇ,
ଏହି ଯଶବଳେ ହୁଅ ଜଗତେ ବୀର ।
କେବଳ ବୟସ ନେଇ          ଆଦର ନ ପାଏ କେହି
ସମ୍ମାନ ଲଭଇ ଗୁଣୀ ହୋଇ ତରୁଣ,
ଗୁଣବଳେ ବଡ଼ ନର,          ତେଣୁ ହେ ବାଳକବର
ଆଳସ୍ୟ ବରଜ ଭଜ ଅରଜ ଗୁଣ ।

ନିର୍ମଳ ଚରିତ୍ର ଧର ସେବା ଉପକାର କର
ଦେଶହିତେ ବଳି ଦିଅ ସ୍ୱାର୍ଥ, ଗରବ,
କର୍ତ୍ତବ୍ୟେ ନିବେଶି ମନ ବୀର ପରି ଉଠ ମାତି,
ତେବେ ସିନା ପ୍ରସରିବ ଯଶସୌରଭ ।

## ନୀତି-ବଚନ

ଯତ୍ନ, ଅଧ୍ୟବସାୟ, ଉଦ୍ୟମ ବଳେ
ଅସାଧ୍ୟ ହୋଇପାରେ ସାଧ୍ୟ ଭୂତଳେ ।
ଗିରିପାଷାଣ ଏଡ଼େ କଠିନ ହୋଇ
ଖୋଳିଲେ ତହୁଁ ପୁଣି ଜଳ ଝରଇ ।

ଥିଲେହେଁ ମାତୃସ୍ତନ ଅମୃତେ ପୂରି
ଜୋକ ପିଅଇ ତହୁଁ ରୁଧିର ଶିରି ।
ତେସନେ ମନ୍ଦମତି ସର୍ବଦା ଖଳ,
ଗୁଣ ନ ଦେଖି ବାଛେ ଦୋଷ କେବଳ ।

ସାଧୁ ଜନର ପୁଣ୍ୟ ସଦୁପଦେଶ,
ମୂର୍ଖ ନ ବୁଝେ ତାର ମରମ ଲେଶ ।
କମଳବାସ ଯଥା ସୁମନୋହର,
ଭେକ କି ବୁଝେ କେବେ ସୁଗନ୍ଧ ତାର ?

ପର ଅଧୀନ ହୋଇ ରହେ ଯେ ପ୍ରାଣୀ,
ଅସରନ୍ତି ଯାତନା ପାଏ ସେ ଜାଣି ।
ହାତୀ ପରାଏ ଜନ୍ତୁ ବନ୍ଧନେ ପଡ଼ି
ଜୀବନେ ଭରିଥାଏ ଅଙ୍କୁଶ ବାଡ଼ି ।

ଦେଶ ଜିଣିଲେ ରାଜା ଲଭଇ ଖ୍ୟାତି,
ବୀର ସମର ଜିଣି ରଖେ କୀରତି ।
ନିଜ ହୃଦୟ ଯେହୁ ପାରଇ ଜିଣି,
ସଂସାରେ ସେହି ବୀର-ମୁକୁଟମଣି ।
ଥିଲେହେଁ ପୂରି ରୂପ, ରଙ୍ଗ, ସୁବାସେ
ଚମ୍ପକ କୁସୁମେ କି ଭ୍ରମର ବସେ ?
ମହକ ଯେଣୁ ତାର ଉତ୍କଟ ଅତି,
ଭ୍ରମେ ଭ୍ରମର ହେନେ ନ ଯାଏ କତି ।
କୋଟିଏ ଗୁଣ ମଧ୍ୟେ ଗୋଟିଏ ଦୋଷ
ସୁଧା କଳସେ ବିଷବିନ୍ଦୁ-ସଦୃଶ ।

## କ୍ରୋଧ

କ୍ରୋଧ ମାନବର ପରମ ଅରି,
କ୍ଷଣକେ ଚେତନା ନିଅଇ ହରି ।
କ୍ରୋଧବଶ ନର ବିବେକହୀନ,
ବନ୍ୟପଶୁଠାରୁ ନୁହଇ ଭିନ୍ନ ।
ହିତାହିତ ବଡ଼ ସାନ ବିଚାର,
ଫଳାଫଳ ପ୍ରତି କି ତାର ଡର ?
ହତ୍ୟା, ପ୍ରତିହିଂସା, ଯୁଦ୍ଧ ଭୀଷଣ,
ଯେତେ କଟୂବାଣୀ, ଯେତେ ଦୂଷଣ;
କ୍ରୋଧ ସେ ସକଳ ପାପର ମୂଳ,
ନରକ କରଇ ଧରଣୀତଳ ।
ହସହସ ମୁଖ, ନୟନ ଠାଣି,
ଯେଉଁ ମୁଖୁଁ ଝରେ ମଧୁର ବାଣୀ,









ଦେବଭାବ ଯେଉଁ ମୁଖେ ପ୍ରକଟ,
ସେ ମୁଖ କରାଏ କ୍ରୋଧ ବିକଟ ।
କ୍ରୋଧ ଯେଉଁ ନର କରିଛି ଜୟ,
ଜୀବନ ତାହାର ଆନନ୍ଦମୟ ।

ଦୁଃଖ ପାପ ତାକୁ ନ ପାରେ ଛୁଇଁ,
ତା ପାଶେ ପୃଥିବୀ ସରଗଭୂଇଁ ।

## ସେତିକି ରହିବ କାଳକାଳକୁ

ଫୁଲ୍ ଦିଏ ମନେ କେତେ ହରଷ
ମଉଳି ଝଡ଼ିଲେ ଆଉ ବାସେନା,
କେତେ ସୁଖ ଆଣେ ନୂଆ ବରଷ
ଚାଲିଗଲେ ଆଉ ଫେରି ଆସେନା ।
କୋଇଲିର କୁହୁତାନ ମଧୁର
ମଧୁମାସ ବିତିଲେ ସେ ଗାଏ କି ?
ମନୋହର ରୂପ ନବବଧୂର
ଯଉବନ ଗଲେ ଆଉ ଥାଏ କି ?
ଗଛରେ ଯେ କୋଟି କୋଟି ପତର
ଗୋଟି ଗୋଟି ପଡ଼ିବ ସେ ଝଡ଼ ରେ,
ପାହାଡ଼ରେ ଅଛି ଯେତେ ପଥର
ମିଶିଯିବ ସବୁ ମାଟିଗୋଡ଼ରେ ।
ମେଘ କୋଳେ ବିଜୁଳିର ଝଟକ
ଚାହୁଁ ଚାହୁଁ ଯାଏ କାହିଁ ପଳାଇ,
ଧମା କରେ ଯେତେ ଛଇଛଟକ
ଧନ ଗଲେ ସବୁ ଯାଏ ମିଳାଇ ।



ଯେତେ ବଡ଼ ଲୋକ ହେଉ ମରିବ
ସବୁ ଛାର ଯିବ ମାଟି ତଳକୁ,
ଯେତିକ ସେ ଭଲ କାମ କରିବ
ସେତିକ ରହିବ କାଳକାଳକୁ ।

## ସହଜେ କିଏ ପରଖେ ଯିବ ?

ଟିକିଏ ହସ ମୁହଁରେ ଫୁଟି
ମନର ବ୍ୟଥା ନିଅଇ ହରି,
ଟିକିଏ ବିଷ ଦେହରେ ପଶି
ବେଦନା କେତେ ଦିଅଇ ଭରି ।

ଟିକିଏ କଥା ବଡ଼ିବଡ଼ିକା
ଦେଶଦେଶକେ ଲଗଇ କଳି,
ଟିକିଏ ନିଆଁ ଉଡ଼ଉଡ଼ିକା
ମହାନଗରୀ ଦିଅଇ ଜାଳି ।

ଟିକିଏ ଦୀପ ଉଠିଲେ ଜଳି
ଦୂରେଇଯାଏ ଅନ୍ଧକାର,
ଟିକିଏ କଢ଼ ଫୁଟିଲେ ଫୁଲ
ବଗିଚ୍ଚ ଭରେ ଗନ୍ଧ ତାର ।

ଟିକିଏ ତାଳ ବାଜିଲା ହେଲେ
ନାଚଗୀତରେ ନ ଥାଏ ରସ,
ଟିକିଏ ମିଠା କହିଁଲ କଥା
କୋଟିଏ ମନ କରଇ ବଶ ।

ଟିକିଏ ଜଳ ଛିଦ୍ର ପାଇ
ରାଜ୍ୟ କରେ ଶଳକାମୟୁ,
ଟିକିଏ ମନ ଦମ୍ଭ କଲେ
ସବୁ କାମରେ ମିଳଇ ଜୟ ।

ବିରାଟ ଏହି ବିଶ୍ୱ କୋଳେ
ମଣିଷ ବୋଲି ଟିକିଏ ଜୀବ
କରିଛି ଯାହା, କରୁଛି ଯାହା,
ସହଜେ କିଏ ପରଚେ ଯିବ ?

( 'ଶିଶୁଲେଖା'ରେ ପ୍ରକାଶିତ—୧୯୭୮ )

## ଯାଏ ସେ ଚିରକାଳ ପାଇଁ

ହାତରୁ ଖସିଗଲେ ଟେକା
ଆଉ କି ହୁଏ ତାକୁ ଧରି ?
ପାଟିରୁ ଖସିଗଲେ କଥା
ଆଉ ସେ ନ ଆସଇ ଫେରି ।

ମଉଳ ଫୁଲ ହେଲେ ବାସି
ଆଉ କି ବାସ ଥାଏ ତାର ?
ଶୁଖିଲା ବାଲି ନେଲେ ଶୋଷି
ଆଉ କି ବହେ ଜଳଧାର ?

ସୂଅରେ ଭାସିଗଲେ କୁଟା
ଉଜାଣି ଉଠଇ କି କାହିଁ ?
ସମୟ ଗୁଲିଗଲେ ଥରେ
ଯାଏ ସେ ଚିରକାଳ ପାଇଁ ।

# କେତେ ଘୋଷୁଥିବ

କେତେ ଘୋଷୁଥିବ ଅତୀତ କୀରତ୍ତି ଗାଥା
ଆମ କୋଣାରକ ଆମର ଏ ବାରବାଟୀ,
ଆମର ଧଉଳ ଆମର ସାଧବ କଥା
କହ୍ନ କହ୍ନ ତୁମେ କେତେ କାଳ ଦେବ କାଟି ?

ସମସ୍ତ ସୁଅରେ ଚାଲିଯାଏ ସବୁ ଭାସି
ସବୁଠି ଲାଗିଛି ନୂଆ ପୁରୁଣାର ଖେଳ,
କାଲି ଥିଲା ଯାହା ଅତୀତେ ଗଲାଣି ମିଶି
ଆଜ କଥା ଭାବ, ଚାଲି ତ ଯାଉଛି ବେଳ ।

ପଶୁ ଅଛି ପଶୁ ସେହିପରି ସବୁକାଳେ
ଗଛ ଦେଉଅଛି ଆଗପରି ଫୁଲଫଳ,
ମଣିଷ କେବଳ ବୁଦ୍ଧି ବିବେକ ବଳେ
ଦେଖାଉଛି ନିତି ନୂଆ ନୂଆ କଉଶଳ ।

ନୁହଁ ତୁମେ ପଶୁ ନୁହଁ ତୁମେ ଜଡ଼ ତରୁ
ତୁମ ଧମନୀରେ ମଣିଷ ରକତ ବହେ,
ତୁମେ କିଆଁ ହୁଅ କର୍ମବିମୁଖ ଭୀରୁ
ଅତୀତକୁ ଜଣି ପାରିବନି କିଏ କହେ ।

ଏ ଯାଏଁ ଆସିଛ ବଣମଣିଷରୁ ଉଠି
ତୁମେ ନିଶ୍ଚୟ ଆଗେଇ ପାରିବ ଆର ।
ତୁମ ହାତେ ଗଢ଼ା କୋଣାରକ ବାରବାଟୀ
ଆହୁରି ଅଧିକ ଉଚ୍ଚେ ଟେକିବ ଶିର ।

# ଗୀତର

## ଢୋଳି ନନା

'କି ହେଲାରେ,
କହ୍ବ ତ ନୁହଇ ଘରଣୀରେ !
ହୋଇଥିଲା ମୋର ଖରାଛୁଟି
ସାଙ୍ଗପାଖୁ ଲେଖୁଥିଲି ଚିଠି,
କାନରେ ବାଜିଲା 'କି ହେଲାରେ
କହ୍ବତ ନୁହଇ ଘରଣୀରେ ।'
ଝରକା ଭିତରୁ ଦେଲି ଚାହିଁ
ଦେଖିବି ବୋଲି ମୁଁ କିଏ ଯାଉଅଛୁ
ଏଡ଼େ ସରଗରେ ଗୀତ ଗାଇ ।

ଗାୟକ ଚାଲୁଛି ଡଳି ଡଳି
କପାଳରେ ଚିତା, ଗଳେ ମାଳି,
ଛେଣ୍ଡା ଖଣ୍ଡାଖଣ୍ଡେ ପରିଧାନ
କାନ୍ଧରୁ ପଇତା ଲମ୍ବମାନ,
ଗାଉଛନ୍ତି ଘଣ୍ଟବାଣୀ କନା
କେହି ନୁହନ୍ତି ଏ ତ ଆମରି ସାଇର
ମନମଉଜିଆ ଭୋଳାନନା ।

ଛୋଟ ବଖୁରିଏ ଚାଳଘର
ସେତିକିଟି ତାର ଆପଣାର,
ପିଲାଛୁଆ ଘରେ ନାହିଁ କେହି
ଭାବନା କରିବ କାହାପାଇଁ ?
ରୋଗ ବାଧିକାରେ ପଡ଼ି ପଡ଼ି
କେଉଁଦିନୁ ତାର ଘରମଣିଷଟି
ଯାଇଛି ଏକଲା ତାକୁ ଛାଡ଼ି ।

ଶାଗ ଭାତ ଲୁଣ ସାରୁପୋଡ଼ା
ପେଟଖଣ୍ଡି ପାଇଁ ଯାହା ଲୋଡ଼ା
ମନସୁଖେ ଖଟି ପର ଘରେ
ସେତିକି ପାଇଲେ କାମ ସରେ,
କାହାକୁ ବା ତାର ଅଛି ଡର,
କାହାଠୁ ଧାରିନ, କି କରିବେ ତାର
ସାହୁକାର ଅବା ସରକାର ?

ଡାକିଲି, "ନନା ହେ ଦଣ୍ଡବତ,
ବୋଲ ବୋଲ ଆଜ ପଦେ ଗୀତ ।"
ନନା ଚାହିଁ ହୋଇଗଲା ଠିଆ
ହସ ମୁହଁ ହେଲା ଓସାରିଆ,
କୋଟିନିଧି ପାଇଲା କି ସତେ
ଏତିକ କଥାରେ ଖୁସି ଏତେ !
ଗୀତ ପଦେ ପଦେ ବୋଲି ବୋଲି
ଦୂରେ ଚାଲିଗଲା ଭୋଳାନନା, ତାର
ସ୍ୱର ଶୁଭୁଥିଲା ମୋତେ ଖାଲି ।

## ସତୁରି ବରଷ ତଳେ *

ପୁରାତନ ଯାହା ଆଜ, ନୂତନ ଥିଲା ସେ କାଲି,
ଆଜର ବଗିଚ ତରୁ ଅଙ୍କୁରଟି ଥିଲା ଖାଲି ।
ଆଜ ମଣଇ ଯେ ବୃଦ୍ଧ ଜୀବନକୁ ମହାଭାର,
ଦିନେ ଥିଲା ସେହି ପୁଣି ସଦ୍ୟ ଶିଶୁ ସୁକୁମାର ।
କିଛି ରହେ ନାହିଁ ଭବେ ଚିରକାଳ ଏକାପରି,
ଦିନ ଯାଇ ରାତି ଆସେ, ରାତି ପୁଣି ଯାଏ ସରି ।
କିଭଳି ଥିଲା ଏ ଦେଶ ସତୁରି ବରଷ ତଳେ,
ସେ କଥା ଭାବିଲେ ହୃଦ ବୁଡ଼ଇ ବିସ୍ମୟ-ଜଳେ ।
ଆମ ପିତାମହ ଯେବେ ପିଲା ଥିଲେ ଆମ ପରି,
ଗାଆଁ ଦାଣ୍ଡେ ଖେଳୁଥିଲେ ଲୁଚକାଳି, ବୋହୂଚୋରି ।
ତାଙ୍କରି ମଧୁର ବୋଲେ ପୂରୁଥିଲା ବାଟଘାଟ,
ସେ ପୁଣି ଆମରି ପରି ପଢ଼ୁଥିଲେ ପାଠଶାଠ ।
ଛାନ୍ଦ, ଗୀତ, ଚଉତିଶା, ପଣକିଆ, ଭାଗବତ,
ଲୀଳାବତୀ ସୂତ୍ର ଆଦି ଘୋଷୁଥିଲେ ଅବିରତ ।
ଛାପାବହି ଥିଲା କାହିଁ ? ତାଳପତ୍ର ପୋଥିମାନ
ଶିକ୍ଷା ଦେଉଥିଲେ ବସି ବେତଧାରୀ ଅବଧାନ ।
ବାଳିକାଏ ଅରଟରେ ସୂତା କାଟି ଘରେ ଘରେ,
ପରିବାର ସେବା-ଧର୍ମ ପାଳୁଥିଲେ ନିରନ୍ତରେ ।
ନ ଥିଲା ସେକାଳେ ରେଳ, ମଟର କି ଶୂନ୍ୟଗାଡ଼ି,
ଶଗଡ଼ କେବଳ ଯାହା ଚାଲୁଥିଲା ଧାଡ଼ି ଧାଡ଼ି ।
ଉଡ଼ାଜାହାଜର ନାମ କେହି ତ ନ ଥିଲେ ଶୁଣି,
ବେତାର ବାରତା କଥା କିଏ ଜାଣିଥିଲା ପୁଣି !

ନେଉଥିଲେ ଝିଙ୍କମଙ୍କ ପଥରୁ ଅନଳକଣା,
ବଢ଼ଆସିଲ ଜାଠି ସୁଖ କାହାକୁ ନ ଥିଲା ଜଣା ।
ସରଳ, ସବଳ, ସୁଖୀ, ନିରଳସ ଥିଲେ ଲୋକ,
ନ ଥିଲା କଳହ, ଏତେ ଅଭାବ, ଉପାସ, ଶୋକ ।
ସେ କାଳ ବାଳକଗଣ ଆଜ ଆମ ପିତାମହ,
କେତେ ନୂଆ କଥା ଏବେ ଦେଖୁଛନ୍ତି ଅହରହ ।
ତଥାପି ରହିଛି ଆଶା ତାଙ୍କର ଏ ଶେଷକାଳେ,
ଆମଠାରେ ନୂଆ କିଛି ଦେଖିପିବେ ନିଜ ତୋଳେ ।

* ରଚନାକାଳ—୧୯୩୪

## ସୁଖର ସଂସାର

କିଏ କହେ ସଂସାରଟା ଦୁଃଖ-ଶୋକ-ଭରା ?
କିଏ କହେ ଦୁଃଖମୟ ଜୀବନଟା ସାରା ?
ପ୍ରଭାତେ ପୂରୁବ ନଭେ ଉଏଁ ଯେବେ ରବି,
ଧରଣୀ ପ୍ରକାଶେ କିବା ହାସ୍ୟମୟୀ ଛବି !
ରଜନୀରେ ଶଶୀ ଆସେ ହସାଇବା ପାଇଁ,
କି ଚେତନ ଅଚେତନ ହିଏ ସେ ହସାଇ ।
ମେଘମାଳା କେତେ ରଙ୍ଗେ କେତେ ରୂପ ଧରି
ବୁଲିଥାନ୍ତି ମହୋଲ୍ଲାସେ ହରିବିଜୟୀ ପରି ।
ଯେତେ ଜୀବ ବିହରନ୍ତି ଜଳେ, ସ୍ଥଳେ, ନଭେ,
କାହାରି ତ ଥାଏ ନାହିଁ ଦୁଃଖ ହେଲେ ଲବେ ।
ଗୀତ ଗାଇ ଗାଇ ପକ୍ଷୀ ଦୂରେ ଯାଏ ଉଡ଼ି,
ନୀଳ ଜଳେ ମୀନ ଖେଳେ ମହାସୁଖେ ବୁଡ଼ି ।
ଫୁଲେ ଫୁଲେ ମଧୁ ଲୁଟି ବୁଲେ ପ୍ରଜାପତି,
ଲତା କୋଳେ ଲୁଣି ଲୁଣି ହସଇ ମାଳତୀ ।

ପବନ ଆସଇ ଜଳେ ଢେଉ ଢୋଳ ଢୋଳ,
ତରୁ ଲତା ସାଥେ କେତେ ଖେଳେ ଲୁଚକାଳ ।
ଜଳେ ହସେ କମଳମା, ହସୁଥାଏ ଖରା,
କଏ କହେ ସଂସାରଟା ଦୁଃଖ-ଶୋକ-ଭରା ?
ବାଳକବାଳକାଗଣ ଆସ ଗୀତ ଗାଇ,
ଜୀବନେ ଅଭାବ, ଦୁଃଖ, ଭୟ କିଛୁ ନାହିଁ ।
ଦୁଃଖ ଯେବେ ଆସିବ ସେ ଯିବ ପୁଣି ଚାଲି,
ସବୁ ଦୁଃଖ ଭୁଲିଯିବା ହସି ହସି ଖାଲି ।
ଆମ ହାସ୍ୟରୋଳେ ହସି ଉଠିବ ଏ ଧରା,
ଆନନ୍ଦର ଧାରା ହେବ ଜୀବନଟା ସାରା ।

## ଭାରତର ନିବେଦନ

ଶୁଣ ହେ ଶତ୍ରୁ, ଶୁଣ ହେ ମିତ୍ର,
ଶୁଣ ହେ ଜଗତବାସୀ,
ନବ-ଭାରତର ନିବେଦନ ପଦେ
ଶୁଣିଯାଅ ଥରେ ଆସି ।
ନୂଆ ନୁହେଁ ଏ ଯେ ଅତି ପୁରାତନ
ମହାଭାରତୀୟ ବାଣୀ,
ଯୁଗେ ଯୁଗେ ଯାହା ଭ୍ରାନ୍ତ ମାନବେ
ଚେତନା ଦେଇଛି ଆଣି ।
ବୁଦ୍ଧ, ଅଶୋକ ଶିଖାଇଲେ ଯେଉଁ
ଉଦାର ଧର୍ମମାତ,
ଶିକାଗୋର ସଭାମଣ୍ଡପ ଯା'ର
ଶୁଣିଲା ବିଜୟ-ଗୀତ,
ଏ ଯୁଗର ମହାମାନବ ଗାନ୍ଧୀ
କହିଗଲେ ପୁଣି ଥରେ,
ସେହି ମନ୍ତ୍ରଟି ଝଙ୍କାରି ଉଠେ
ଯୁଗେ ଯୁଗେ ଭାରତରେ ।

ବିଶ୍ୱପିତାର ସନ୍ତାନ ଆମେ
ଗୋଟିଏ ସେ ପରିବାର,
ରୁଷିଆ, ଜାପାନ, ଚୀନ, ଆମେରିକା
ସବୁ ଏଇ ବସୁଧାର ।
ଲକ୍ଷ୍ୟ ଆମର ଶାନ୍ତି ମୈତ୍ରୀ,
ସତ୍ୟ ଆମର ଭାଷା,
ସ୍ୱାର୍ଥ ଲାଗି ଏ ଦୁନିଆ ଦଳିବୁ—
କେବେ କରିନାହୁଁ . ଆଶା ।
ଭାରତର ସେଇ ଅମର ମନ୍ତ୍ର
'ହିଂସାରେ ନାହିଁ ଜୟ,
ଶାନ୍ତିର ପଥ ଯୁଦ୍ଧ ନୁହେଁ, ସେ
ଶକ୍ତିର ଅପଚୟ ।'
କୋଟି ଜନତାର କାନେ କାନେ ସେହି
ଅମୃତ ବାଣୀ ବାଜ,
ହିମାଚଳଠାରୁ କୁମାରିକାଯାଏ
ସ୍ପନ୍ଦନ ଖେଳେ ଆଜ ।
ଆସ ହେ ଶତ୍ରୁ, ଆସ ହେ ମିତ୍ର,
ଆସ ହେ ମାନବ ଜାତି,
ଭାରତର ଏଇ ତୀର୍ଥଭୂମିରେ
ମିଳାଅ ଛାତିକୁ ଛାତି ।
ଆଉଁ ଆକୁଳ ଭାଇଭଉଣୀର
ଲୁହ ପୋଛିଦିଅ ଭାରେ,
ଫିଙ୍ଗିଦେଇ ସେ ଉଦଜାନ ବୋମା
ଊର୍ମିଳ ବାରିଧିରେ ।
ବିଜ୍ଞାନ ଦେଉ ଭୋକୀରେ ଅନ୍ନ,
ରୁଗ୍ଣ ଶରୀରେ ବଳ,
ଅଭାବ ଦୈନ୍ୟ ଯାଉ ଅପସରି
ଧରା ହେଉ . ନିର୍ମଳ ।
ଜୀବନ-ପୁଷ୍ପ ବିକଶିତ ହେଉ
ମରୀଚିକା ଯାଉ ଭୁଲି,
ସବୁଜ ଶୋଭାର ଲହରୀ ଖେଳାଉ
ରୁକ୍ଷ ସାହାରା ବାଲି ।

# ଧ୍ୱଂସ ଓ ସୃଷ୍ଟି

ଚାରିଆଡ଼େ ପ୍ରଳୟ ସମର,
ନରରକ୍ତେ ସିକ୍ତ ଆଜି ମହୀ,
ପଦେ ଦଳି ଅଗଣିତ ଶବ
ବୀରଦର୍ପେ ଚାଲିଛି ବିଜୟୀ ।
ବିଜ୍ଞାନର କରାମତ ଯେତେ
ପରୀକ୍ଷିତ ହୁଏ ନିତିଦିନ,
ଜଳ ସ୍ଥଳ ଆକାଶ କମ୍ପାଇ
ଫୁଟୁଅଛି ଯୁଦ୍ଧର କମାଣ ।
ମହାସିନ୍ଧୁ ନୀଳ ଊର୍ମି ତଳେ
ଶତ ଶତ ଜୀବନ୍ତ ସମାଧି,
ସୁଶ୍ୟାମଳ ସୁରମ୍ୟ ଧରଣୀ
ହୋଇଅଛି ରାକ୍ଷସର ଗାଦି ।
ସୁଶୋଭିତ ସୌଧମାଳା ଭେଦି
ମୁମୂର୍ଷୁର ହାହାକାର ଉଠେ,
ସୁବିମଳ ନୀଳ ନଭ କୋଳେ
ବୋମାବାହୀ ବ୍ୟୋମଯାନ ଛୁଟେ ।
ଘରେ ଘରେ ଆର୍ତ୍ତ ହାହାକାର
ଦେଶେ ଦେଶେ ହତ୍ୟା ବିଭୀଷିକା,
ସ୍ୱାର୍ଥମଦେ ଅନ୍ଧ ଆଜି ନର
ଧ୍ୱଂସ ତାର ହୋଇଛି ଜୀବିକା ।
ଏହିକାଳେ ରଣକ୍ଷେତ୍ରେ ଯେବେ
ଲକ୍ଷ ଲକ୍ଷ ଶିର ଯାଏ ଛିଡ଼ି,
ଜଗତର ନରନାରୀ କହି
ନ ଭାବନ୍ତୁ ଯୁଦ୍ଧ କଥା ଗୁଢ଼,

ଧ୍ୱଂସ ହତ୍ୟା ଜୟ ପରାଜୟେ
ମଗ୍ନ ଯେବେ ମନ ଜଗତର,
ନୂଆ ନୂଆ ଶିଶୁ ଘେନ ପ୍ରଭୁ
ଗଢ଼ୁଛନ୍ତି ଭବିଷ୍ୟ ସଂସାର ।

କାହିଁ ଘନ ଦ୍ରାକ୍ଷାଲତା ତଳେ,
କାହିଁ ରୁକ୍ଷ ମରୁ ସିକତାରେ,
ଶବ୍ଦାୟିତ ନଗରୀରେ ଅବା
ଦୂର ଶାନ୍ତ ବିଜନ କାନ୍ତାରେ,

ସ୍ନେହମୟୀ ଜନନୀର କୋଳେ
ଖେଳାନ୍ତି ସେ ସୁକୁମାର ଶିଶୁ,
ଏହିମାନେ ହେବେ ପୁଣି ଦିନେ
ବୁଦ୍ଧ, କୃଷ୍ଣ, ମହମ୍ମଦ, ଯୀଶୁ ।

କାହିଁ ବୀର ସିକନ୍ଦର ଅବା
ଗଢ଼ୁଛନ୍ତି କାହିଁ କାଳିଦାସ,
ନିଉଟନ୍‌, ଅଶୋକ, ଲେନିନ୍‌
ଜବାହାର, ଗାନ୍ଧୀ ବା ସୁଭାଷ ।

ଶିଶୁଠାରେ ଅମର ପ୍ରତିଭା
କେହି ସିନା ପାରୁନାହିଁ ଜାଣି,
ଅଲକ୍ଷିତେ ହେଉଛନ୍ତି ଗଢ଼ା
କାଲିପାଇଁ କବି, ନେତା, ଜ୍ଞାନୀ ।

ଭବିଷ୍ୟତ ସଂସାରରେ ପଥ
ଦେଖାଇବେ ଏହି ଶିଶୁଗଣ,
ତେଣୁ ଏହି ଧ୍ୱଂସଲୀଳା ବେଳେ
ସର୍ଜନାରେ ରତ ଭଗବାନ ।

[ ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ଲିଖିତ ]










ନିସ୍ୱଣ ଜନର ଆଶା ହେ ତୁମେ
ବଣା ବାଟୋଇର ସାଥୀ,
ତୁମରି ପରଶେ ଜଳ ସ୍ଥଳ ହସେ
ତୁମ ବୀଣା ବାଜେ ଦିବାରାତି ॥

ଭବ ମରୁଭୂମେ ତୁମେ ସୁଧାବାରି
ଅଗାଧ ସିନ୍ଧୁରେ ତୁମେ କର ପାରି
ତୁମରି ଇଙ୍ଗିତେ ଚଳାଅ ହେ ମୋତେ
ଚଳାଅ ମୋ ଦେଶ ଜାତି । ୧ ।

ଘୋଟିଆସେ ଯେବେ ପ୍ରଳୟ ବତାସ
ତୁମରି ଆଶ୍ରୟେ ମିଳଇ ଆଶ୍ୱାସ
ସବୁ ଜାଣିଶୁଣି ଭୁଲିଯାଏ ପୁଣି
ହୃଦୟ ଜଞ୍ଜାଳେ ମାତି । ୨ ।

କେବେ ସେ ସୁଦିନ ହେବ ମୋର ସଖା,
ଘୁଞ୍ଚିବ ବିପଦ ଦୁଃଖ ଭୟ ଦକା,
ତୁମ ନାମ ଧରି ମରଣେ ନ ଡରି
ଦେଖାଇ ଦେବି ଏ ଛାତି । ୩ ।



ତୁମରି ଆଲୋକ ଲାଗି
ଘନ ଅନ୍ଧକାରେ ପ୍ରଭେ ବସିଅଛ ଜାଗି ॥
ମନେ ବହୁ ବଡ଼ ଆଶ     ଏକା ଗୃଲୁଥିଲ ବାଟ
ଟାଣପଣ ଦେଖି ମୋର ଗଲ କ ସରି ? ୧ ।
ଜଣା ତ ନ ଥିଲା ମୋତେ     ଖାଲ ଖମା ଅଛୁ ଏତେ
ଅବାଟରେ ଖସି ପଡ଼ ହୋଇଛୁ ଦାଗୀ । ୨ ।
ତୁମେ ଏକା ମୋର ସାହା     ଅନ୍ଧାରେ ଦେଖାଅ ରାହା
ଦୋଷ କରିଅଛୁ ଯାହା ନେଉଛୁ ମାଗି । ୩ ।

●

ସାଧବ ବୋହୂ ଲୋ ସାଧବ ବୋହୂ
ମୁହଁ ପୋତି ପୋତି କୁଆଡ଼େ ଯାଉ ॥
ନାଲି ଗୁଲୁ ଗୁଲୁ ସାଧବ ବୋହୂ
ବରଷଯାକ ତୁ କେଉଁଠି ରହୁ ?
ବରଷା ଆସିଲେ ପାଟଶାଢ଼ୀ ପିନ୍ଧି
ଘାସ ପଡ଼ିଆରେ ବୁଲୁ ତୁ ଥାଉ । ୧ ।
ଝିପି ଝିପି ଯେବେ ବରଷା ପଡ଼େ
ଝିଙ୍କ ପୋକ ଉଠି ଗାଡ଼ରୁ ଉଡ଼େ
ବେଙ୍ଗ ଲ୍ଲୀ ନାମାର ବାହାଘର ଲାଗେ
ଦେଖିବାକୁ ତୁ କ ବାହାରି ଯାଉ ? ୨ ।
ଶାଗୁଆ ଘାସରେ ଫୁଲଟି ପରି
ସତେ କ ଟୋପିଏ ରକତ ଝରି
ଟିକି ଟିକି ପାଦେ ଥିରି ଥିରି ଚାଲୁ
ଛୁଇଁଦେଲେ ତୋତେ ଅଟକ ଯାଉ । ୩ ।
ନାଲି ଟହ ଟହ କଅଁଳ ଦେହ
କିଏ ଦେଲା ତୋତେ କହ ଲୋ କହ
ପଣ୍ଡାରିଙ୍କର ଝିଅ ବୋଲି ପରା
କାହାରି ସାଥିରେ କଥା ନ କହୁ । ୪ ।

●

ଭାରତ ଭାରତ ଭାରତ ମୋର ମା'ଟି
ସାରା ଜଗତରେ ଆହା କ ମିଠା ତାର ନାଁଟି ॥
ଏଇ ଦେଶ ମାଟି ପାଣି, ଏଇ ଦେଶ ପବନ,
ଏ ଦେଶରେ ଫୁଲଫଳେ ଗଢ଼ା ମୋର ଜୀବନ । ୧ ।
ଏ ଦେଶରେ କୃଷୀ କରେ ଗାଁ ବିଲ ଶାଗୁଆ,
ଏ ଦେଶର କାରିଗର ଦୁନିଆଁରେ ଆଗୁଆ । ୨ ।
ଆମେ ପୁଅ ଝିଅ ମିଳି ଏ ଦେଶକୁ ଗଢ଼ିବୁ,
ଜୀବନକୁ ପଣ କରି ଅରି ସଙ୍ଗେ ଲଢ଼ିବୁ । ୩ ।
ଫର ଫର ଉଡ଼େ ଆମ ତିନିରଙ୍ଗ ପତାକା,
ଗାଉଥିବୁ ସବୁଦିନେ ତା' ଜୟଗୀତିକା । ୪ ।

●

ନୀଳ ଆକାଶକୁ ଉଡ଼ ଉଡ଼ ଯା
ଉଡ଼ ଯା ମୋର ଲୋଟଣି ପାରା,
ମେଘ ରାଇଜରେ ବୁଲି ବୁଲିକା
ବଉଦ ସାଥେ ଖେଳିବୁ ପରା ॥
ମେଲାଇ ଡେଣା ଫୁଲାଇ ଛାତି
ଉଡ଼ୁଥିବୁ ତୁ ଦିବସ ରାତି
ବାଧିବ ନାହିଁ ରେ ଖରର ତାତି
ଖୋଲା ପବନ ରହିଛି ଭରା । ୧ ।
ଆକାଶ ଉପରେ ଯିବୁ ତୁ ଉଡ଼ି
ଯେତେ ଦୂରକୁ ନ ପାଏ ଗୁଡ଼ି
କୁଆପଥର ପଡ଼ଇ ଝଡ଼ି
ଅଜାଡ଼ି ପଡ଼େ ବରଷାଧାରା । ୨ ।
ଜହ୍ନମାମୁର ରାଇଜ ବୁଲି
ମନଟା ତୋର ଯିବ ରେ ଭୁଲି
ଯୁଆଡ଼େ ଯିବୁ ଦେଖିବୁ ଖାଲି
ରୁପେଲି ହାଟ ସରଗତାରା । ୩ ।

●

ଭାସି ଯା ମୋର କାଗଜଡଙ୍ଗା
ଗୁହିଁ ବସିଛି ମୁଁ ଏହିଠାରେ
ବରଷା ପାଣିରେ ଦୋହଲି ଦୋହଲି
ଚ୍ଛଲଯାଅ ଭୁହି ବହୁଦୂରେ ॥
ଏଇ ସୁଅ କୋଳେ ଭାସି ଭାସି
ଉଚ୍ଛୁଳା ନଈରେ ଯିବୁ ପଶି
କେତେ ଗାଆଁ କେତେ ଛୋଟା ବଲବଣ
ଦେଖି ଦେଖି ଯିବୁ ଦୁଇଧାରେ । ୧ ।
ଟିକି ପିଲାମାନେ ଭାଲ ମାଉ
ଡାକୁଥିବେ ତୋତେ ହାତ ଠାଉ
ତାଙ୍କ ଡାକ ଶୁଣି ଭଲ ଯିବୁ ନାହିଁ
କୂଳକୁ ଆଉଜି ନ ଯିବୁରେ । ୨ ।
ନଈରୁ ଯିବୁ ତୁ ଦରିଆକୁ
ଦେଖିବୁ ବିରାଟ ଦୁନିଆକୁ
ଯେତେଣେ ଯାଅ ପଛେ ଜନମମାଟିକୁ
ମନେ ରଖିଥିବୁ ସବୁଠାରେ । ୩ ।

●

ପାଣି ଖେଳେ ତକା ତକା ଭଉଁରୀ
ବେଲ ବୁଡ଼ିଯାଏ ବେଗେ କାଭ ମାର ନାଉରୀ ॥
ପାହାଡ଼ର ମଥାରେ କଳା ମେଘ ଘୋଟଇ
ଗୋଳି ପାଣି ସୁଅରେ ମାଛ ଶିଘ୍ର କାଟଇ
ନଈବଢ଼ି ହେବ ବେଣୀ ଫେଣ ଆସେ ଆତୁର । ୧ ।
ଖରାଦିନେ ଖେଳୁଥିଲି ଏଇ ନଈବାଲିରେ
ଏପାରିରୁ ସେପାରିକୁ ଯାଉଥିଲି ଚ୍ଛଲି ରେ
ଆଜି ସେ ନଈରେ କେହି ପାରିବ କି ପହଁରି । ୨ ।
ମନେହୁଏ ଦୁନିଆଟା ବଦଳୁଛି ଏପରି
ଆଜି ଯିଏ କୋଟିପତି କାଲି ସିଏ ଭିକାରୀ,
କିଏ କହିବ କୁହୁକିଆ କାହାର ଏ କାଉଁରୀ । ୩ ।

●

କାଲି ମୋ ଜନମଦିନ କେଡ଼େ ମଜା ରେ
ଆଜଠାରୁ ଲାଗିଲାଣି ଘର ସଜାରେ ॥
ବୋଉ ମୋତେ କହିଅଛି      ମୋ ପାଇଁ ଆଣିବ ବାଛି
ଯେତେ ଭଲ ଜାମା ଥିବ ହାଟବଜାରେ—
କେଡ଼େ ମଜାରେ । ୧ ।
ପିଠାପଣା ଖିରିପୁରି      କୋବି ମାଛ ତରକାରି
ଖାଇବେ କେଜାଣି ଲୋକ କେତେ ହଜାରେ—
କେଡ଼େ ମଜାରେ । ୨ ।
ଆସିବେ ନାରଣ ଭାଇ      ଝୁଣ୍ଣି ନାମି ହେମ ଆଈ
ପୁରିରୁ ଆସିବେ ପୁଣି ତୁଇଁ ଅଜାରେ—
କେଡ଼େ ମଜାରେ । ୩ ।
ହେବ ପାଲା ନାଚ ଗୀତ      ମନ ଭରି ଦେଖିବୁ ତ
ଦାଣ୍ଡରେ ବାଜବ ପୁଣି କଳବାଜା ରେ
କେଡ଼େ ମଜାରେ । ୪ ।

କହ କହ ସତେ ଭଗବାନ
କାହିଁକି ତୁମର ସୃଷ୍ଟିରେ      ଏତେ ଅସମାନ ॥
କଠିନ ପାଷାଣ ହିମାଳୟ
କାହିଁ ମହାସିନ୍ଧୁ ଜଳମୟ
ଗଣି ଗଣି ବାଲି ମରୁଦେଶେ ପୁଣି
କାହିଁ ତରୁଲତା ଅଗଣନ । ୧ ।
ପୁନଅଁ ପଛକୁ ଅମାରାତି
ତୁଳସୀ ସାଥିରେ ବଣୁଆତି
ହାତୀ ପିମ୍ପୁଡ଼ିରୁ ଜଣାପଡ଼େ ତୁମ
କାରିଗରିପଣ କେଡ଼େ ଟାଣ । ୨ ।
ପ୍ରବଳର ଯେତେ ଅତ୍ୟାଚାର
ଦୁର୍ବଳର ଆଉ ହାହାକାର
ମଣିଷ ଭିତରେ ଅସୁର ଦେବତା
ଅମୀର ଫକୀର ବଡ଼ ସାନ । ୩ ।